ଶ୍ରୀ ମଦନ ଦାସଙ୍କ ବିରଚିତ

# ନିଗମଗୀତା ।

## ପ୍ରଥମ ଖଣ୍ଡ ।

ପଣ୍ଡିତ ଶ୍ରୀ ଜନାର୍ଦ୍ଦନ କରଙ୍କ ଦ୍ୱାରା
ସଂଶୋଧିତ ହୋଇ
ଶ୍ରୀ କୃଷ୍ଣଚନ୍ଦ୍ର ପଧାନ ଓଗେରଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ ।

କଟକ, ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।



Printed by Nityananda Sahoo
at the Arunodaya Press
CUTTACK.
1929

ମୂଲ୍ୟ ଟ ୦ ।୵ ଛଅଅଣା ମାତ୍ର ।

# ନିଗମଗୀତା

## ପ୍ରଥମ ଅଧ୍ୟାୟ ।

ବନ୍ଦେ ଗୁରୁ ସ୍ୱରୂପଞ୍ଚ ବ୍ୟାପିତଂ ସଚରାଚରଂ ।
ତ୍ୱଂ ବ୍ରହ୍ମା ବିଷ୍ଣୁ ଶିବଞ୍ଚ ଶରଣଂ ନିଗମେଶ୍ୱରଂ ॥

ବନ୍ଦେ ଶ୍ରୀ ଗୁରୁଦେବ ସ୍ୱାମୀ । ସକଳ ଭୂତ ଅନ୍ତର୍ଯ୍ୟାମୀ ॥
ପୁଣ୍ୟଚିର ଶିଖେ ଉଦୟେ । ଦିଶୁଅଛ ଜାଜ୍ୱଲ୍ୟମୟେ ॥
ଭକତ ଜନଙ୍କୁ ଦର୍ଶନ । ବ୍ୟାପିଛ ଏ ତିନି ଭୁବନ ॥
ବ୍ରହ୍ମା ବିଷ୍ଣୁ ଶିବ ତୋ ନାମ । ପିଣ୍ଡ କାରଣ ପୂର୍ଣ୍ଣବ୍ରହ୍ମ ॥
ଗୁରୁ ପିତା ମାତା ବୋଲାଉ । ଗୁରୁ କରତା ଦୀକ୍ଷା ଦେଉ ॥
ଶ୍ରୀଗୁରୁ ମହିମା କେ କହି । ପାରିବ ନରଦେହ ବହି ॥
ତୋହର ମହିମା ଅଶେଷ । ଅଶେଷଜ୍ଞ କେ କରୁ ଶେଷ ॥
ତୋହର ମହିମା ନିଗମ । କୃପାହେଲେ କରିବ ଗମ ॥
ଦୟାନ୍ତି ପୁରୁଷ ବୋଲାଉ । ଭୃତ୍ୟ ତୋ ପାଦତଳେ ଥାଉ ॥
ତୋ ପାଦ ଯାରେ ଦୟାକରେ । ଜ୍ଞାନ ତା ହୃଦମଧ୍ୟେ ସ୍ଫୁରେ ।୧୦
କରୁଛି ମୁହିଁ ନିବେଦନ । ନ ଜାଣେ କର୍ମ ଜ୍ଞାନ ଧ୍ୟାନ ॥
ନ ଜାଣେ ଯାଗ ଜପତପ । ପଢ଼ିଣ ନାହିଁ ବେଦକଳ୍ପ ॥
ତୋ ନାମ ପ୍ରବନ୍ଧ ପ୍ରକାଶ । କରି ଛଡ଼ାଇବି କଲ୍ମଷ ॥
ନ ଜାଣେ ଭକ୍ତି ମୁକ୍ତି ପଥ । ନ ଜାଣେ ଅଷ୍ଟାଦଶ ଗ୍ରନ୍ଥ ॥
କରିଣ ନାହିଁ ସାଧୁ ସଙ୍ଗ । ନ ଜାଣେ ମୁଁ ଭକତ ଭାବ ॥
ସନ୍ଥଙ୍କ ସଙ୍ଗେ ବସି ନାହିଁ । ମହାନ ସେବା କରେ କାହିଁ ॥

ଅଜନ୍ମ ମୂରୁଖ ଅଟଇ । ଗୃହଶାଳୀ ଦେଖିବ କାହିଁ ॥
ସ୍ଥିର ବୁଦ୍ଧି ମୁଁ ହୋଇନାହିଁ । ଚଗଲ୍ଭ ସମସ୍ତ ଅଟଇ ॥
କେମନ୍ତେ ଲେଖିବ ତୋ ଗୁଣ । ଭୋ ଗୁରୁ କର ପରମାଣ ॥
ନିଗମ ପଥରେ ଗମନ । ଅଲେଖା କରିବ ଲେଖନ ॥
ଗୁରୁ ସମର୍ଥ ନ ହୋଇଲେ । ଭୃତ୍ୟ ଭାସିବ ଭବଜଳେ ॥
ମୁଁ ଭାସିଗଲେ ଅବା ତହିଁ । ତହିଁକି ମୋ ଶୋଚନା ନାହିଁ ॥
ଗୁରୁ ମହାମହିମା ମେରୁ । ହୁବ କର ପାରନ୍ତି ଦାରୁ ॥
ମୂକଜନ ବେଦ ଗାବଇଁ । ପଙ୍ଗୁ ପର୍ବତ ଲଙ୍ଘିଯାଇ ॥
କୃପାସାଗର ଅଭରସା । ହୋଇଲେ ବୁଡ଼ିବ ମୋ ଆଶା ॥
ଏମନ୍ତ ମହିମା ଶୁଣିଣ । ତୋ ପାଦେ ପଶିଲି ଶରଣ ॥
ଭରସା କରଛି ସନ୍ତତେ । ଅକୂଳ ସାଗରେ ବୋଇତେ ॥
ମେଲଛି ତୋ ଭରସା ପାଇ । ବୁଡ଼ିଲେ ନିନ୍ଦା ତୋତେ ହୋଇ
ସୁଜନ ଅଟଇ ଯେ ନର । ତାଙ୍କୁ ମୋ ନ ଥାଉ ଯେ ଡର ॥
ଖଳ ଲୋକଙ୍କୁ ଦୂରୁ ଦେଖି । ନମସ୍କାର କରଇ ସଖି ॥
ଛନ୍ଦହିଁ ପଦେ ନ ଜାଣନ୍ତି । ମରମ ବଦାରେ କହନ୍ତି ॥
ଏଣୁକରି ମୁହିଁ ଭଜୁଛି । ଲେଖନ ପତର ଧରୁଛି ॥
ଚରଣେ ଶରଣ ପଶିଲି । ପରଶନ ହୋଇବୁ ବୋଲି ॥
ମୋ କଣ୍ଠେ ବସିକରି ତୁହି । ନିଗମ ଗୀତା ଢଅ କହ ॥
ତୁ ଯେବେ ହୋଇବୁ ପ୍ରସନ୍ନ । ନିଗମ ମୋ ମୁଖୁ ବଖାଣ ॥
ଶୁଦ୍ଧ ଅଶୁଦ୍ଧ ବୋଲିକରି । ଗାଇବେ ତୋ ନାମ ସୁମରି ॥
ତୋହର ମୋତେ ଦୟା ଯେବେ । ସନ୍ଥ ଯେ ଏ ଗୀତା ଗାଇବେ ॥
ଏ ସଂସ୍କୃତ ପ୍ରାକୃତ । ଷସ୍ୱାର୍ଥ ଯେ ପରମାର୍ଥ ॥
ପିଣ୍ଡ ବ୍ରହ୍ମାଣ୍ଡ ଏକମତ । ବୁଝିବେ ସୁସାଧୁ ପଣ୍ଡିତ ॥
ନବ୍ୟାକରଣ ଷଡ଼ଶାସ୍ତ୍ର । ଏ ସଙ୍କଠାରୁ ଅର୍ଥ ରସ ॥
ଅଠର ସପ୍ତ ଗ୍ରନ୍ଥ ଟୀକା । ଗୀତା ଭାଗବତ ବଚନିକା ॥
ଏ ଅବ ନିର୍ଗୁଣ ଶ୍ରୀଗୁଣ ମୂଢ ଡିଣ୍ଡାନ୍ତଙ୍କ ବଚନ ॥

ମହାନମାନଙ୍କ ଉଚ୍ଛିଷ୍ଟ । ଖାଇଣ ହେଉଥିବ ତୁଷ୍ଟ ॥
ହେ ଗୁରୁ ଏହି ଦୟାକର । ଦେଖାଅ ନିଗମ ଗୋଚର ॥
କଟାକ୍ଷ ନୟନେ ଅଳପ । ଚାହିଁଲେ ଭୃତ୍ୟଠାରୁ ପାପ ॥
ଘୁଡ଼ଣ ହୋଇବ ନିର୍ମଳ । ନାମ ନଉକାରେ କେବଳ ॥
ବସି ନିଶଙ୍କା ମାର୍ଗେ ତହିଁ । ଭବଜନ୍ତୁ ତରିବ ମୁହିଁ ॥
କରୁଣା ନୋହିଲେ ତୋହର । ଭୃତ୍ୟ ନ ବଞ୍ଚେ ଏହି ବାର ॥
ଅଶକ୍ତ କରଅଛି ଦାସ । ତୁ ଯେବେ ହୋଇବୁ ନିରାଶ ॥
ଭୃତ୍ୟ ମରିବ ନିଶ୍ଚେ ତାଳେ । କଥା ରହିବ କାଳେ କାଳେ ॥
ସୁଜନେ ବୋଲିବେ ଯେ ତହିଁ । ଗୁରୁଙ୍କ ଭକ୍ତମଲ୍ଲ ଏହି । ୫୧ ।
ଏ ନିନ୍ଦା ଶୂଳ ଯେ ବାଜିବ । ମୋହର କିସ ତହିଁ ଯିବ ॥
ତୋର ମହିମା ତୁହି ରଖ । ମୋ ଛାର ଅଟଇ ମୂରୁଖ ॥
ମୂର୍ଖାନ୍ଧ ମତରେ ଯେ ମୁହିଁ । ପରଦାର କରଇ ଯାଇଁ ॥
ପରଧନ ହରଣ କରେ । ଦାମ୍ଭିକ ଜୀବନକୁ ଧରେ ॥
ପର ପୀଡ଼ନ ପରହିଂସା । ଦ୍ୟୁତ ଶଠତା ଖେଳ ପଶା ॥
ଖଳ ଦୁର୍ଜନଙ୍କ ସଙ୍ଗତେ । ମଦ ମାଂସ ଭକ୍ଷଇ ନିତ୍ୟେ ॥
ଚଞ୍ଚଳ ପବନ ପରି ହୋଇ । ମୋ ମନ ନିରତେ ଭ୍ରମଇ ॥
କାମିନୀ ସଙ୍ଗ କାମନାରେ । ହେଉ ନ ରହେ ମୋ ଅଙ୍ଗରେ
ମନକୁ ନ ପାରନ୍ତି ଧରି । ହେ ଗୁରୁ ବାରେକ ଉଦ୍ଧର ॥
କେମନ୍ତେ ହେବ ସଦ୍‌ବୁଦ୍ଧି । ଉକ୍ଷଣ ଥିବ ଦୟାନିଧି ॥
ଜୀବଠାରେ ମୋ ଦୟା ନାହିଁ । ନାମରେ ସ୍ମରଣ ନ ଥାଇ ॥
ଏଥିକି ଉପାୟ କେମନ୍ତ । କହ ହେ ଗୁରୁ ଭଗବନ୍ତ ॥
ଶୁଣିଛି ମୋହର ଶ୍ରବଣେ । ନାନାଜାତି ଅଦ୍ଧ ପୁରାଣେ ॥
ସଦଗୁରୁର କୃପା ହେଲେ । ଭବସାଗରୁ ତରେ ଭଲେ ॥
ଏ କଥା କରି ମୁଁ ସ୍ମରଣ । ପଶିଲି ତୋ ପାଦ ପଦ୍ମେଣ ॥
ଜ୍ଞାନ ଲୋଚନକୁ ପ୍ରାପତ । ଅଶକ୍ତ ଯିବ ମୋ ଯେମନ୍ତ ॥
ତୋର କଥାରେ ଜ୍ଞାନ ସ୍ଫୁରୁ । ତୁ ମାତା ପିତା ଜ୍ଞାନ ଗୁରୁ ॥

ତୁ ହର୍ତ୍ତା କର୍ତ୍ତା ବାସୁଦେବ । ନିସ୍ତାର କରପାରୁ ଜୀବ ॥
ତୁ ମୋକ୍ଷଦାତା ଜନାର୍ଦ୍ଦନ । ସକଳ ଭୂତେ ତୋର ସ୍ଥାନ ।୨୦
ଅନେକ ଜନ୍ମରୁ ଯେ ମୁହିଁ । ବ୍ରହ୍ମର ତତ୍ତ୍ୱ ପାଇନାହିଁ ॥
ପରମ ତତ୍ତ୍ୱ ଭେଦାଭେଦ । ଜ୍ଞାନ ଖଡ୍ଗରେ ନାଥ ଛେଦ ॥
ତୁମ୍ଭ ଅଙ୍ଗରେ ମୁଁ ଦେଖଇ । ଯେଣୁ ଜ୍ଞାନଲୋଚନ ହୋଇ ॥
ସକଳଭୂତେ ନାଥ ତୁହି । ତୋ ବିନୁ ଅନ୍ୟ କେହି ନାହିଁ ॥
ଗୁରୁ ରୂପରେ ବଳେ କର । ସଚରାଚରରେ ବିହର ॥
ସାକ୍ଷ ପ୍ରତ୍ୟକ୍ଷ ତେଜହୋଇ । ଡାକିଲେ ଡାକ ନ ଶୁଭଇ ॥
ଏ କଥା ଅଟେ ଅଗମିତ । ଜୀବ ଉଦ୍ଧାରେ କେ ସାମର୍ଥ ॥
ଶୁଣିଣ ଶୁଣାଉଛୁ ବ୍ରହ୍ମ । କହ୍ନ କୁହାଇ କର୍ତ୍ତା ହୋଇ ॥
ନାଚ ନଗୃଡ ଭ୍ରବବଳେ । ନୟନେ ଠାରୁ ଅବହେଳେ ॥
ଜୀବର ସଙ୍ଗେ ସଙ୍ଗ ହୋଇ । ଜୀବ ନା ଚିହ୍ନି ନ ପାରଇ ।୩୦।
ତ୍ରି ତାପେ ହୋଇଣ ଦଗଧ । ଅନବରତ ହୋଏ ବଧ ॥
ଏଥିକି ତୋ ନାମ ଅମୃତ । ହେ ଗୁରୁ ଦିଅ ଏ ସୁପଥ ॥
ବାମନ ହୋଇକର ମୁହିଁ । ଅକାଶ ଚନ୍ଦ୍ରକୁ ଧରଇ ॥
ପବନକୁ ପାତଇ ଫାନ୍ଦ । ସୂଚି ମୁନେ ମେରୁ ବିନ୍ଧ ॥
ଟାଳବ ବୋଲି ବସୁରଇ । ବରଷା ଧାରକୁ ଗଣଇ ॥
ମୃତ୍ତିକା ଚୂର୍ଣ୍ଣକରୁ ଧୂଳି । ଆକାଶେ ତାରାର ମଣ୍ଡଳି ॥
ହେ ଗୁରୁ ତୋର ଦୟା ହେଲେ । କିଛି ସଂଖ୍ୟା କରିବ ବୋଲେ ॥
ଏ ମନ ବାଞ୍ଛା କଳ୍ପତରୁ । ଏ ବ୍ରହ୍ମରୂପ ମହାମେରୁ ॥
ଏ ମନ ଅର୍ଦ୍ଧମାତ୍ରା ହୋଇ । ଘଟେ ଘଟେ ବ୍ୟାପି ଅଛଇ ॥
ଅର୍ଦ୍ଧମାତ୍ରା ଯେ ସ୍ୱଧାହୋଇ । ଜଗତ ସ୍ୱରୁ ସେ ଅଟଇ ॥
ଯେ ଗୁରୁ ହୋଇଲେ ପ୍ରସନ୍ନ । କଳ୍ମଷ ହୋଇବ ଦହନ ॥
ସ୍ୱଧାର ନାମ ଗୁରୁ ହୋଇ । ପରମ ତତ୍ତ୍ୱ ଯେ ଅଟଇ ॥
ସ୍ୱଧାର ନାମ ମହାମନ୍ତ୍ର । ଯେ କଲେ ଜଗତ ପବିତ୍ର ॥
ସେ ସ୍ୱଧା ନାମ ମୂଳମନ୍ତ୍ର । ଜପୁଛି ମୋର ହୃଦଗତ ॥

ସେ ଗୁରୁ ପ୍ରସନ୍ନ ମୋକାସ୍ତେ । କାହାକୁ ନାହିଁ ମୋର ଭୟେ ॥
ବୋଇଲେ ନିର୍ଭୟ କରନ୍ତୁ । କର ଏ ନିଗମ ବେଦାନ୍ତ ॥
ମୋନାମେ ତା ନାମ ମିଶାଇ । ନିଗମଗୀତା କର ଶୁଦ୍ଧ ॥
ଏତେ ବୋଲିଣ ଗୁରୁ ମୋର । ଲେଖନ ଦେଲେ ମୋ ହସ୍ତର ॥
ଯେତେବେଳୁ ମୋ ହୃଦେ ଜ୍ଞାନ । ସ୍ଫୁରୁଛି ପଦ ଅର୍ଥ ପୁଣ ॥
ଅଜ୍ଞାନ ନାଶିଲୁକ ଜ୍ଞାନେ । ତମ ବିନାଶେ ରବି ଯେସନ୍ତେ ॥
ଯାହାଙ୍କ ଗୁହାଁଲେ ଯେ ମୁହଁ । ଗୁରୁ ବଳେ କର ଅଛଇ ॥
ଏଣୁକରି ନିର୍ଭୟ ପଦ । ସ୍ଫୁରୁଛି ମୋହର ଯେ ହୃଦ ॥
ସ୍ୱପ୍ନେ ହେବେଦ ମୋର ଜ୍ଞାନ । ସ୍ଫୁରୁଛି କରଇଁ ଲେଖନ ॥
ହେ ମହାସନ୍ତ ପୂଜ୍ୟ ଜନ । ଦୋଷ ମୋ କେବେହେଁ ନ ଘେନ ॥
ପ୍ରସନ୍ନେ ଗୁରୁ ଆଜ୍ଞା ଦେଲେ । ପ୍ରକାଶେ ଲେଖଇଁ ମୁଁ ଭଲେ ॥
ଏ ଦେହ ଜଣାଣ କରଇଁ । ହେ ବୁଧେ ସାହା ମୋର ତୁହି ॥
ହୋଇଣ ଶୁଦ୍ଧାଶୁଦ୍ଧ ପଦ । ବାଛିଣ ଗାଇବ କୋବିଦ ॥
ମୁଁ ତୁମ୍ଭ ଦାସର ଯେ ଦାସ । କ୍ଷମା କରିବା ମୋର ଦୋଷ ॥
ଅପରାଧିର ଅପରାଧ । କ୍ଷମା କରିବା ଅଟେ ବୁଧ ॥
ଶ୍ରୀଚରଣ ରେଣୁ ତୁମ୍ଭର । ଅଟେ କହନ୍ତି ମୁଁ ପାମର ।୧୧୦।
ଏ ଦୋଷ ମାଗେ କରଯୋଡ଼ି । ଭକତଜନ ପାଦେ ପଡ଼ି ॥
ହେ ଶିଷ୍ଟ ଭକ୍ତ ପରାୟଣ । ଶୁଣ ମୋ ଜନ୍ମର କଥନ ॥
ମନକର୍ଣ୍ଣ ଦେଇଣ ଶୁଣ । ଜାତ ହୋଇଲି ଯେଉଁ ସ୍ଥାନ ॥
ଠିକ ଠିକ ଏବେ କରୁଣ । କହିବ ଦାନବ୍ୟ କାରଣ ॥
ଭାରତ ବର୍ଷର ମଧ୍ୟରେ । ଜମ୍ବୁଦ୍ୱୀପ ଭିତ ଖଣ୍ଡରେ ॥
ଉତ୍କଳ ଦେଶ ବୋଲି କହି । ନବଲକ୍ଷ ଓଡ଼ିଶା ପୁରି ॥
ଖଣ୍ଡପଡ଼ା ବୋଲି ରାଜ୍ୟରେ । ଚିତ୍ର ଉତ୍ପଳା ନପାଶରେ ॥
ସେ ନଦୀ ଦକ୍ଷିଣର ତୀର । ପଦ୍ମାବତୀ ନାମେ ନଗର ॥
ତହିଁ ପ୍ରସାଦ୍ ଖାନ୍ତକାର । ବସନ୍ତ ପୁରୁଷ ନର ॥
ସିଦ୍ଧ ଯୋଗୀନ୍ଦ୍ରଙ୍କର ସ୍ଥାନ । ସକଳ ସିଦ୍ଧି ଯହିଁ ପୂର୍ଣ୍ଣ ।୧୨୦।

ସେ ଗ୍ରାମେ ଦାସ ମୁଁ ଅଛଇ । ବ୍ରାହ୍ମଣ ଶରୀରକୁ ପାଇ ॥
ଦିବ୍ୟସିଂହ ଦେବ ରାଜନ୍ତ । ଉନ୍ନବିଂଶ ଅଙ୍କରେ ସ୍ଥିତ ॥
ମକର ଚତୁର୍ଦ୍ଦଶୀ ଦିନ । ଉତ୍ତରଷାଢ଼ା ବିଦ୍ୟମାନ ॥
ବାୟୁବ୍ୟ କରଣ ଅଛଇ । ସକଳ ଗ୍ରହ ଉଚ୍ଚେ ଥାଇ ॥
ବେଳ ଉଦୟ ସମୟରେ । ମାତା ଡାନ ଦେବୀ ଗର୍ଭରେ ॥
ଜନମ ହୋଇଲି ଯେ ମୁହିଁ । କନ୍ଦର୍ପ ଜାଜୁଲ୍ୟା ଦିଶଇ ॥
ମୋ ମାତା ପରମ ସାଧ୍ୱୀ । ନିରତେ ପତିପାଦେ ସେବି ॥
ସଦା ବିଷ୍ଣୁ ଭକ୍ତ ଅଛଇ । ସାଧ୍ୱୀ ସର୍ବଗୁଣଗ୍ରାହୀ ॥
ପିତାଙ୍କ ନାମ ବୃନ୍ଦାବନ । ସୁଖେ କଲେ କାଳ ଯାପନ ॥
ପରମ ବୈଷ୍ଣବ ଅଛଇ । ଅହିଂସାବ୍ରତ ଧରିଥାଇ । ୧୩୦ ।
ହରି ଭକ୍ତିରେ ସଦା ପୂର୍ଣ୍ଣ । ପର ଉପକାରରେ ଦିନ ॥
ତାହାଙ୍କ କୁଳରେ ଜନମ । ଦେଖିଣ ସର୍ବ ଗୁଣଧାମ ॥
ନାମ ଦେଲେ ମାତା ମୋହର । ବାଞ୍ଛିଣ ମଦନସୁନ୍ଦର ॥
ଅଜ୍ଞାନ କାଳରେ ଯେ ମୁହିଁ । ମାତାର କୋଳେ ଦିନ ନେଇ ॥
ସାତ ବରଷ ଠାରେ ମୁହିଁ । ମାସେ ଯେ ବିଦ୍ୟା ପଢ଼ିଲଇଁ ॥
ଚଟଶାଳୀରେ ମାଡ଼ ଖାଇ । ସେ ଦିନୁ ବିଦ୍ୟା ବନ୍ଦ ହୋଇ ॥
ମୋ ଜ୍ୟେଷ୍ଠଭ୍ରାତ ନାରାୟଣ । କହିତ ଜ୍ଞାନର ଦର୍ଶନ ॥
କହିଲା ମୋତେ ଦୟା ବହୁ । ପରମ ପ୍ରିୟ ତାର ମୁହିଁ ॥
ସାତ ଭାଇରେ ସର୍ବ ସାନ । ତାହାଙ୍କ ଦୟା ସ୍ୱଭାବେଣ ॥
କାଳ ଅବଶ ହେଲା ତହିଁ । ସେମାନେ ନିଜପଥ ବହି ।୧୪୦।
ବାକି ରହିଲୁଁ ଦୁଇଭାଇ । ମଦନ କେଶବ ଅଛଇ ॥
ଚକ୍ର ହୋଇଲି ଏକନାଶୀ । ଶାରଙ୍ଗ ନାମ ଯେ ତାହାର ॥
ରୂପକୁ କ ଅବା ପାର୍ବତୀ । ସମ ନୋହିବେ ଏ ଧରତୀ ॥
ମୋ କର୍ମ ବିପାକରେ ତହିଁ । ତାହାକୁ ହରାଇଲି ମୁହିଁ ॥
ପାଗଳା ମତକୁ ଧରିଲି । ବନ କନ୍ଦର ଯେ ବୁଲିଲି ॥
ଷଟ ଖଟେ ବନଭ୍ରମି । ବହୁତ ହେଲି ପଥଶ୍ରମୀ ॥

ବିରକ୍ତ ହୋଇଣ ଯେ ତହିଁ । ସ୍ୱର୍ଣ ଖୋଳିବୁ ଯାଉଥାଇଁ ॥
ଦଇବ ଯୋଗ ତହିଁ ଭଲ । ସ୍ୱଅଣ ପର୍ବତର ତଳ ॥
ହୃଦେ ସ୍ଫୁରିଲା ମୋର ଜ୍ଞାନ । ନିବର୍ତ୍ତି ବଲି ମୋରମନ ॥
ବୋଇଲି ସ୍ୱର୍ଣମତ ତେଜ । ନିରତେ କୃଷ୍ଣପାଦେ ଭଜ ।୧୫୦
କରୁଛି ଏବେ ତୀର୍ଥାଟନ । ସେଠାରୁ ଗମିଲି ମୁଁ ପୁଣ ॥
ପାଦଗାମୀ ହୋଇଣ ଗଲି । ବହୁତ ତୀର୍ଥ ଯେ ଭ୍ରମିଲି ॥
ବିଷ୍ଣୁର ରୂପ ଚନ୍ଦ୍ରବର୍ଣ୍ଣ । ନ ଦେଖି କଲି ବହୁ ଶ୍ରମ ॥
ଯହିଁକି ଗଲେ ମୁହିଁ ତହିଁ । ପିତ୍ତଳ ପ୍ରତିମା ଦେଖଇ ॥
କି ଅବା କାଷ୍ଠ ଯେ ପାଷାଣ । ରଜତ କି ଅବା ସୁବର୍ଣ୍ଣ ॥
ତମ୍ବା ଅଥବା ଶାଳଗ୍ରାମ । ଏ ସବୁ ମନୁଷ୍ୟ ଘଟଣ ॥
କହିଲେ ନ କହନ୍ତି କଥା । ଡାକିଲେ ନ ହଲାନ୍ତି ମଥା ॥
ସେ ଅତି ରୂପ ମନୋହର । କର୍ଣ୍ଣକୁ ନ ଶୁଭେ ତାଙ୍କର ॥
ଯେତେହେଁ ଚରଣେ ଶରଣ । ପଶିଲେ ନକରେ କଲ୍ୟାଣ ॥
ଏଣୁ ସେ ମନ ତୁଚ୍ଛ ହେଲା । ବିଶ୍ୱାସ କେବେହେଁ ନ ଗଲା ॥
କହନ୍ତି ବେଦାନ୍ତ ବ୍ରାହ୍ମଣେ । ଶୁଣିଛି ମୋହର ଶ୍ରବଣେ ॥
ନାନାଦି ଶାସ୍ତ୍ର ପୁରାଣ । ସକଳଭୂତେ ନାରାୟଣ ॥
ଘଟଘଟରେ ପୂର୍ଣ୍ଣ ବ୍ରହ୍ମ । କେବେହେଁ ନ କଲି ଦର୍ଶନ ॥
ନ ପାଇ କରୁଣ ଦର୍ଶନ । ମନ ହୋଇଲା ଛନଛନ ॥
ଚେତା ଚୈତନ୍ୟ ଉଡ଼ିଗଲା । ଜୀବ ମୋ ଅସ୍ଥିର ହୋଇଲା ॥
ମନ ଜ୍ଞାନ ପ୍ରାଣ ନ ଥାଇ । ବ୍ୟାଘ୍ର ଭାଲୁଙ୍କ ଭୟ କାହିଁ ॥
ଗୃହର ଆଶା ତେଜିକରି । ସମ୍ପଦ ବିପଦ ପାସୋରି ॥
ଏମନ୍ତେ କେତେଦିନ ଗଲା । ଏକଇ ସନ୍ଥ ନ ମିଳିଲା ॥
ଉଦ୍ଧେଣ ପର୍ବତ ଭିତର । ଦେଖିଲି ମୁଁ ଚର୍ମନେତ୍ରର ॥
ତାହାର ତନୁ ବିରାଜଇ । ଅଦ୍ଭୁତ ଶୋଭା ହୋଇ ଥାଇ ।୧୭୦
ଜାଜ୍ୱଲ୍ୟ ମୂର୍ତ୍ତି ତାର ଶୋଭା । ଗଞ୍ଜଇ ଅରୁଣର ପ୍ରଭା ॥
ଭୃତ୍ୟର ଦେଖିଣ ବିକଳ । ଗୁରୁ ସ୍ୱରୂପେ ଅଦମୁଳ ॥

ମିଳିଲେ ମୋହର ପାଖର । ବୋଇଲେ ଶୁଣରେ କୁମର ॥
କେବଣ ଠାରେ ତୋ ନିବାସ । ବୁଲୁଛୁ ଏ ଅରଣ୍ୟ ଦେଶ ॥
କାହାକୁ ଡର ତୋର ନାହିଁ । ଏ ବନେ ବୁଲୁଛୁ କପାଇଁ ॥
ଏମନ୍ତ ଶୁଣିଣ ବଚନ । ବିସ୍ମୟ କଲି ପଞ୍ଚମନ ॥
ଜନ୍ମରୁ ମୋହର ଯେ ତହିଁ । ଏମନ୍ତ ରୂପ ଦେଖି ନାହିଁ ॥
କି ଅବା ଅନାଦି ଅନନ୍ତ । କି ଅବା ଅଟେ ଅବଧୂତ ।୯୦।
ମୋହର ଠାରେ ଦୟାବନ୍ତ । ମୋହର ଗୁରୁ ଅଟେ ଏହି ॥
ଏମନ୍ତ ବିଗ୍ଭର ମୁଁ କଲି । ପାଦପଦ୍ମ ତଳେ ପଡ଼ିଲି ॥
ବୋଇଲି ଗୁରୁ ନାରାୟଣ । ବୈଷ୍ଣବ ହୁଅଇ ଏ ପୁଣ ॥
ହାତି କପାଳେ କର ଦେଇ । ବୋଇଲି ଶୁଣିବା ଗୋସାଇଁ ॥
ଖଣ୍ଡପଢ଼ାରେ ଘର ମୋର । ମାୟାରେ ମନ ମୋ ଅସ୍ଥିର ॥
ମିଛରେ ବେଭାରେ ଅଛଇ । ମନ କ୍ଷୋଭରେ ଭ୍ରମୁଥାଇ ॥
ଯହିଁକି ଭ୍ରମୁଅଛି ମୁହିଁ । ତୋତେ କି ଗୋଚର ନୁହଇ ॥
ଭୂତେ ଯେ କେହୁ ଅଟ ପ୍ରଣ । ଚିନ୍ତା ଯେ ଦିଅ ମୋ ଅଗେଣ ॥
ଏହା ଶୁଣିଣ ଗୁରୁ ମୋର । ଦର୍ଶାସ୍ୟ କଟାକ୍ଷ ଭଙ୍ଗିର ॥
ବୋଇଲେ ଶୁଣ ରେ କୁମର । ନୂତନ ପାଇଣ ଶରୀର ୧୯୦ ॥
ପାସୋର ଚହ୍ନି ନ ପାରିଲୁ । ଏବେ ଅଜ୍ଞାନ ହୋଇଗଲୁ ॥
ଯେ ତୋର ଇଚ୍ଛା ମୋତେ କହ । ମନରେ ଯେ ଅଛି ସନ୍ଦେହ ॥
ପୂର୍ବରେ ତୋହର ମୋହର । ଚିନ୍ତା ଯେ ହୋଇଛି ଅପାର ॥
ଏ କଥା ଶୁଣିକରି ମୁହିଁ । ବହୁତ କାର୍ପଣ୍ୟ ଯେ ହୋଇ ॥
ଅନ୍ଧ କି ଚକ୍ଷୁକୁ ପାଇଲା । ଚନ୍ଦ୍ର କି କୁମୁଦ ଦେଖିଲା ॥
ଭାନୁକି ପଦ୍ମ ଦେଖିକରି । ନତନ ଘନେ କି ମୟୂରୀ ॥
ଅନେକ ଆଶା ଗୃତକର । ପାଇଲା କିବା ଘନକୀର ॥
ତେସନ ସନ୍ତୋଷ ଲଭିଲି । ଧନ୍ୟ ଭାବେ ପଚାରିଲି ॥
ହେ ପ୍ରଭୁ ଯେବେ ତୁ ପ୍ରସନ୍ନ । ଜୀବ ଆତ୍ମାର ତତ୍ତ୍ୱ ଜ୍ଞାନ ॥
କହ କି ପ୍ରକାରରେ ବହି । ବ୍ରହ୍ମାଣ୍ଡ ମଧ୍ୟେ ଜୀବରହି ॥

ସର୍ବ ଘଟରେ ହୋଇସ୍ଥିତ । କେଉଁଠାବରେ ବସିଥିବ ॥
ବ୍ରହ୍ମଛ ନାଚ ନଚାଉଛି । ବ୍ରହ୍ମଣ ନସ୍ତୁକେ ଠାବୁଛି ॥
ସ୍ଥିତି ଉତ୍ପତ୍ତି ଯେ ପ୍ରଳୟ । କେଉଁ ଠାବରୁ ହୋଏ କହ ॥
ଜଗତେ ନାମରୂପ ଧର । କିରୂପେ ଲୀଳା କରେ ହର ॥
ନାରାୟଣର ରୂପ ବର୍ଣ୍ଣି । ଦେଖାଇ ନ ଦେଲେ ମୋ ପ୍ରାଣ ॥
ନିଶ୍ଚେ ଯିବ ଗୁରୁବର । ହେ ଗୁରୁ ପ୍ରତିକାର କର ॥
ଶୁଣିଣ ତପିବର ତହୁଁ । ପ୍ରେମରେ ଜର ଜର ହୋଇ ॥
ବେନ ନେତ୍ରରେ ଅଂନ ଥନ । ବୋଇଲେ ଦେଖ ରେ ନନ୍ଦନ ॥
ବୋଇଲେ ବାବୁ ଅରେ ଶୁଣ । ଏ ମୂର୍ତ୍ତି ବ୍ରହ୍ମ ସନାତନ ॥
ଶଙ୍ଖଚକ୍ର ଘେନି ଉଦରେ । କହିଛନ୍ତି ତୋହର ଦେହେ ॥
ତୋହର ଦେହେ ତୁହି ଚିନ୍ତ । ସଂସାରେ ନୁହ ଏବେ ଛନ୍ନ ॥
ଶ୍ରୀଗୁରୁ କୃପାରୁ ମୋହର । କୃତାର୍ଥ ହୋଇଲା ଶରୀର ॥
ପାଇଲି ପରମର ତତ୍ତ୍ୱ । ଅନେକ ଜନ୍ମର ଦୁଷ୍କୃତ ॥
ପବିତ୍ର କଲି ମୋର ନେତ୍ର । ଆତ୍ମଜ୍ଞାନ ଯେଣୁ ପ୍ରାପତ ॥
ମୋହର ଦେହେ ହସ୍ତ ମାରି । ବୁଝାଇ ଦେଲେ ତପସ୍ୱୀ ॥
ସ୍ଥିତି ଉତ୍ପତ୍ତି ଯେ ପ୍ରଳୟ । ତୁଟିଲା ସଂସାର ସଂଶୟ ॥
ଅନ୍ଧର ଅନ୍ଧେ ହୋଇଗଲା । ପୂର୍ବର ପୁଣ୍ୟ ପ୍ରକାଶିଲା ॥
ମାତା ପିତାଙ୍କର ସୁପୁଣ୍ୟ । ପାଇଲି ଏ ଜ୍ଞାନଲୋଚନ ॥
ଜ୍ଞାନ କର୍ମ ଭକ୍ତିକି କହ । ମୁକ୍ତି ଚମାଷ ଦେଲେ ବୁଝାଇ ॥
ସୁଦୟା କର ଗୁରୁ ମୋର । ଶୁଣ ରେ ବଳା ଜ୍ଞାନସାର ॥
ତୋ ନାମ ତୁ ଭଜନ କର । ଭେଳାକୁ ବାନ୍ଧ ହେତୁ ଧର ॥
ତୋହର ନାମ ଜ୍ଞାନ ଧ୍ୟାନ । ତୁ ଜପ ତପ ପୁଣ୍ୟକାମ ॥
ତୋହର ରୂପ ଏ ସଂସାର । ପୂରିଛି ଏ ସଚରଚରେ ॥
ତୁ ଶାଳଗ୍ରାମ ଶିଳା ଯେତେ । ପିତୁଳା ଆଦ୍ଧ ଯେ ସମସ୍ତେ ॥
ଶିବର ଶକ୍ତି ଆଦ୍ଧ କର । ଏହାଙ୍କୁ ଭଜନ ନ କର ॥
ତୋତେଦେହେଁ ତୁହି ଭଜ ବାବୁ । ତେବେ ତତ୍ତ୍ୱଧାରୀ ହୋଇବୁ ॥

ଏ ମହାମନ୍ତ୍ର କର ଜପ । ଛଡ଼ିବ ତୋ ମନୁ ବିତାପ ॥
ସେହୁ ଅଟଇ ତୋର ମାଆ । ମାଆକୁ ଚହ୍ନିଲେ ତୋ ସାଆ ॥
ମାଆକୁ ଜାଣିଲେ କୁମର । ଏ ଦେହ ହେବ ଅଜାମର ॥
ଏ ମହାମନ୍ତ୍ର ଯେ ଅଟଇ । ଅର୍ଦ୍ଧମାତ୍ରା ରାଧିକା ହୋଇ ୧୩୦
ରାଧାର ଅଙ୍ଗରେ ଯେ ଭକ୍ତି । କରି ପାରିଲେ ହେବୁ ମୁକ୍ତି ॥
ଏକା ନାମରେ ହେଲେ ରଙ୍କା । କାହାକୁ ନ ଥିବ ତୋ ଶଙ୍କା ॥
ଭକ୍ତିରେ ମୁକ୍ତିପଥ ପାଇ । ପୀୟୁଷ ସୁଧାରସ ଖାଇ ॥
ପିଇ ପାରିଲେ ତହୁଁ ସୁଧା । କେବେ ନୋହିବ ଯମବାଧା ॥
କ୍ଷୁଧା ପିପାସା ହେବ ଦୂର । ଏମନ୍ତ କହି ଗୁରୁ ମୋର ॥
ତୋର କୌତୁକକୁ ନ ଦେଲେ । ସୁଦୟା କରୁଣ କହିଲେ ॥
ବୋଇଲେ ଶୁଣ ଅରେ ବାଳ । ଗୃହସ୍ଥ କର୍ମେ କେତେ କାଳ ॥
ଗୃହସ୍ଥ ଧର୍ମ ରକ୍ଷା କର । ଅଚେତା ନୋହିବୁ କୁମର ॥
ହୋଇଲେ ବୃଦ୍ଧାବୟସ । ତୋ ପାଶେ ହୋଇବ ପ୍ରବେଶ ॥
ଏମନ୍ତ କହି ଗୁରୁ ମୋର । ତକ୍ଷଣେ ହୋଇଲେ ଅନ୍ତର ॥
ଏ ଜ୍ଞାନ ପାଇକରି ମୁହିଁ । ଗୃହରେ ପ୍ରବେଶିଲି ଯାଇ ॥
ଏକଇ ସ୍ୱର୍ଗ ଅପସରୀ । ସାରଥି ନାମ ଯେ ତାହାର ॥
ବିବାହ ହେଲି ତାକୁ ବରି । ତା ସଙ୍ଗେ ବେହାର ମୋହର ॥
ଭକ୍ତି ଲକ୍ଷଣ ଗୁଣ ବହି । ଗୃହସ୍ଥ ଧର୍ମ ଅଛି ବହି ॥
ଏମନ୍ତେ କେତେ ଦିନ କରେ । ସେ ପଦ୍ମାବତୀର ନଗରେ ॥
ଏକଇ ଥିଲି ସାହୁକାର । ସୁଜ୍ଞାନ ପଣେ ବଡ଼ ଧୀର ॥
ନାମ ତା ରାମ ମହାପାତ୍ର । ପଣ୍ଡିତ କୁଳକୁ ମଣ୍ଡିତ ॥
ବ୍ରାହ୍ମଣ ବୈଷ୍ଣବରେ ମାନ୍ୟ । ସଦା ସେ ହରିପରାୟଣ ॥
ସେ ଏକ ଦିନକରେ ତହିଁ । ମୋଠାରେ ପିଣ୍ଡ ବହି ॥
ପଣ୍ଡରେ ଧର୍ମକଥା ମାନ । ଶୁଣି ମୁଁ ହେଲି ତୋଷମନ ॥
ତାହାକୁ ଏ ଧର୍ମ ମୁଁ କହି । ବହୁତ ଉପଦେଶ ଦେଲି ॥
ସାକ୍ଷାତ ଧର୍ମ ଏ ଶୁଣିଲେ । ଭକତେ ମୋତେ ବୃଦ ମାନିଲେ

ସେଠାରୁ ସ୍ୱର୍ଣ୍ଣପୁର ଗଲି । ସହର ମଧ୍ୟରେ ରହିଲି ॥
ଏକଇ ବନରେ ମୋହର । ମନରେ କଲି ମୁଁ ବିଚାର ॥
ଅପଢ଼ା ପାଠକୁ ପଢ଼ିବ । ଯଶାରେ ନାମ ରଖିଥିବ ॥
ଅଗନ୍ୟ ପଥକୁ ଗମନ । ନିଗମ ବେଦ ଏ ବଚନ ॥
ଏଥିରେ ନାନା ଅର୍ଥ ରସ । ନିଗମ ଗୀତା ଏ ପ୍ରକାଶ ॥
ପ୍ରଥମ ତାପନୀକା ଏଥି । ଦୁଇଶ ଚଉଷଠି ହୋଇ ॥
ପ୍ରାକୃତ ପ୍ରବନ୍ଧ ପ୍ରକାଶ । ନିଗମ ଗୀତାର ଏ ରସ ॥
ଭାଷା ପ୍ରବନ୍ଧରେ ସମ୍ପୂର୍ଣ୍ଣ । ଶ୍ରୀମନ୍ତ ଗୁରୁଙ୍କ ଚରଣ ॥
ଆଶ୍ରୟ କରଣ ମଦନ । କହିଲି ଏ ଗୀତା ନିଗମ ॥

ଇତି ଶ୍ରୀ ନିଗମଗୀତାକଥନେ ବ୍ରହ୍ମବିଦ୍ୟାନିରୂପଣେ ମନ-
ଚୈତନ୍ୟସମ୍ବାଦେ ମଦନଦାସବିରଚିତେ ନାମ
ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ ।

କସ୍ୟ ଆତ୍ମା କଥଂ ଜ୍ଞାନ କସ୍ମୁତେନ ପ୍ରବର୍ତ୍ତିତେ ।
ଓଁକାର ଦ୍ରବ୍ୟବେ କୋନ ପ୍ରଣବାଦ୍ଧ ବଦନ୍ତତଃ ॥

ମନ ପଗ୍ରୁରେ ଚଇତନ । ଗୁରୁଙ୍କ ପାଦେ କରି ମାନ୍ୟ ॥
ଆତ୍ମାର ଧର୍ମ କର୍ମ ଜ୍ଞାନ । କାହୁଁ ହୋଇଲା ଉତପନ୍ନ ॥
ଆତ୍ମା କେଉଁଠାରୁ ସମ୍ଭବ । ଆତ୍ମାଟି କାହାକୁ କହିବ ॥
ଆତ୍ମାର ରୂପ ଗୋଟି କେହି । କେଉଁ ଠାବରେ ଥିଲା ରହି ॥
ଜ୍ଞାନ ସେ କାହାକୁ କହନ୍ତି । କେଉଁ ପ୍ରକାରେ ସେ ପ୍ରବର୍ତ୍ତି ॥
ଓଁକାର କେମନ୍ତ ସ୍ୱରୂପ । କାହୁଁ ଜନମ କେଉଁରୂପ ॥
କେମନ୍ତ ପ୍ରକାରେ ପ୍ରଣବ । ବୁଝାଇ କହ ଗୁରୁଦେବ ॥
ଆତ୍ମା ପ୍ରଣବର ଓଁକାର । କେମନ୍ତ ଅଟଇ ପ୍ରକାର ॥

ଜଗତଭକ୍ତ ମୋ ଯେଜନିବା । ଗୁପତ ସନ୍ଧି ଫିଟାଇବା ॥
ଏ ଜୀବ କେମନ୍ତେ ଉଦ୍ଧାର । କହ ହେ ଗୁରୁଦେବ ମୋର ॥
ମନର ସକଳ ଦେଖିଣ । ପ୍ରସନ୍ନ ହୋଇ ଚଇତନ ॥
ପଦ୍ମ ଆସନେ ବସି ଧୀରେ । ଚକ୍ଷୁ ଥୋଇ ଅନାହତରେ ॥
ବୋଲନ୍ତି ଶୁଣ ଅହୋ ଜୀବ । ଆତ୍ମା ଓଁକାର ଯେ ପ୍ରଣବ ॥
ଏଥିରେ ବସ୍ତୁର କହିବା । ତୋ ମନୁ ସଂଶୟ ଫେଡିବା ॥
ମହାବ୍ରହ୍ମ ଯାକୁ ବୋଲନ୍ତି । ମହତ ପୁରୁଷ ଉତ୍ପତ୍ତି ॥
ମହା ଶୂନ୍ୟରେ ଯେହୁ ଥାଇ । ବହିରେ ସର୍ବ ଘଟେ ଯେହୁ ॥
ବ୍ରହ୍ମବୋଲି ଯାହାକୁ କହି । ସେ ସୂକ୍ଷ୍ମ ଜ୍ୟୋତିରୂପ ହୋଇ ॥
ବିଶୁଦ୍ଧ ବୋଇଲେ ଯେ ତହିଁ । ବାଣଶେଷ ଶୁଦ୍ଧ ଯେ ଅଟଇ ॥
ନିର୍ବିକଳ୍ପ ଯେ ନିର୍ବିକାର । କଳ୍ପଣା ନାହିଁ ଯେ ତାହାର ॥
ସଙ୍କଳପ ତୋହର ଦେହ । ସମସ୍ତ କଳ୍ପଣା ଯେ ତହିଁ ॥
ସେ ପୂର୍ଣ୍ଣାନନ୍ଦ ପୂର୍ଣ୍ଣଦେଖି । ସମସ୍ତ ତାଠାରୁ ଝରଇ ॥
ସଦା ଆନନ୍ଦ ଅଟେ ସେହୁ । ଜ୍ଞାନ ଲୋଚନେ ତାକୁ ପାଇ ॥
ସକଳ ଘଟେ ଏକା ହରି । ବଜନ୍ମେ ଶଙ୍କରଷଧାଂସ୍ତ ॥
ପାପିମାନଙ୍କ ପାପ ହରେ । ହରିନାମ ବନ୍ଧ ସଂସାରେ ॥
ପୁଣି ସେ ଅଟଇ ଅମୃତ । କହିବା ଶୁଣ ଦେଇ ଚିତ୍ତ ॥
ସେ ସଦାନନ୍ଦ ଏକବ୍ରତ । ସର୍ବ ଠାବରେ ଏକମତ ॥
ଅଛିଦ୍ର ବୋଇଲେ ଯେ ସେହୁ । କେବେହେଁ ଛିଦ୍ର ସେ ନୁହଇ ॥
ଆତ୍ମା ବୋଲିକର ତାହାଙ୍କୁ । ସେ ପୂର୍ଣ୍ଣାନନ୍ଦ ଈଶ୍ୱରଙ୍କୁ ॥
ସକଳଭୂତେ ତାର ସ୍ଥିତ । ସମସ୍ତେ ତହିଁରୁ ଉତ୍ପତ୍ତି ॥
ସମସ୍ତ ପ୍ରାଣୀ ପିତୃପତା । ପୂଜନ୍ତି ସକଳ ଦେବତା ।୩୦।
ସର୍ବଦା ଅଟେ ପୁରାତନ । କେବେହେଁ ନୁହଇ ନୂତନ ॥
ଏଣୁ ସେ ପୁରାଣ ପୁରୁଷ । ବୁଧେ କହନ୍ତି ପ୍ରକାଶ ॥
ଏଣୁ ସେ ଅଟେ ନିର୍ବିକାର । ବିକାର ନାହିଁ ଯେ ତାହାର ॥
ଅନାମ ବୋଲାଇଛି ସେହୁ । ଏଣୁ ନାମର ଅନ୍ତ ନାହିଁ ॥

ସକଳ ନାମ ଯେ ପ୍ରକାଶି । ସେ ଅକ୍ଷୟ ଯେ ଅବିନାଶୀ ॥
ସାକ୍ଷି ପୁରୁଷ ରୂପବଶି । ସକଳଭୂତେ ଅଛି ବସି ॥
ଅବ୍ୟକ୍ତ ବୋଇଲେ ସେ ବ୍ୟକ୍ତ । କେବେହେଁ ନୋହେ ପୂର୍ଣ୍ଣଦେହ
ସେ ଅଣାକାର କ୍ଷୟ ନୋହି । ଝଲଗ ଅଟେ ତାର ଦେହି ॥
ଏମନ୍ତ ବ୍ରହ୍ମ ସର୍ବଘଟେ । ଆତ୍ମାରୁ ଆତ୍ମା ଯେ ପ୍ରକଟେ ॥
ତୋ ଆଗେ ଆତ୍ମାର ନିର୍ଣ୍ଣୟ । ଗୁପତ ଜ୍ଞାନର ସଂଶୟ ।୪୦।
କହିଲି ଶୁଣ ଅହୋ ମନ । ଶତେକ ଜଳଘଟ ପୁଣ ॥
ଗଗନେ ଚନ୍ଦ୍ର ଉଦେ ହୋଇ । ସହସ୍ର ଘଟରେ ଦିଶଇ ॥
ସକଳ ଭାଙ୍ଗି ଜଳଘଟ । ପୁଣିହିଁ ରହଇ ଯେ ଏକ ॥
ପ୍ରକାରୁ ପ୍ରକାର ଏ ହୋଇ । ସର୍ବ ବ୍ୟାପକ ଆତ୍ମାଛଇ ॥
ଆତ୍ମା ନିର୍ଣ୍ଣୟ ବର୍ଣ୍ଣାବର୍ଣ୍ଣ । କେବେ ସେ ନୁହଇ ଅବର୍ଣ୍ଣ ॥
ସକଳ ବର୍ଣ୍ଣ ଅଟେ ସେହି । ସର୍ବ ବର୍ଣ୍ଣ ତହୁଁ କ୍ଷରଇ ॥
ବର୍ଣ୍ଣର ମଧ୍ୟେ ତାର ବାସ । ନିର୍ମୋହ ନିଷ୍ପାପ ପୁରୁଷ ॥
ନିର୍ମଳ ବୋଲାଇଛି ସେହି । ମଳ ତାଠାରେ ଲାଗିନାହିଁ ॥
ସଂସାରେ ଯେତେ ପାପପୁଣ୍ୟ । ତାଠାରୁ ହୁଅଇ ଉତ୍ପନ୍ନ ॥
ପ୍ରଳୟ କାଳରେ ଏମାନ । ଆତ୍ମାରେ ହୁଅନ୍ତି ଦହନ ।୫୦।
ଚଞ୍ଚଳ ନିଶ୍ଚଳ ଅଟଇ । ଚଳିବାକୁ ତା ସ୍ଥାନ ନାହିଁ ॥
ସଂସାରେ ସ୍ୱଇଚ୍ଛା ବିହାର । ଜଳ ବିମ୍ବ ପରକାର ॥
ସ୍ୱୟମ୍ଭୂ ସମ୍ଭୂତ ସେ ହୋଇ । ତାହାର ସ୍ରଷ୍ଟେ ଗଢା ସେହି ॥
ତାହାକୁ କେ ଗଢ଼ି ପାରିବ । ଆପଣେ ହୋଇଛି ଉଦ୍ଭବ ॥
ଯାହାର ଭ୍ରୂଭଙ୍ଗି ମାତ୍ରେଣ । କୋଟି ବ୍ରହ୍ମା ଶିବ ଗଠନ ॥
ସକଳ ଭୂତମାନେ ଯହିଁ । ଯା ପ୍ରେମମୂର୍ତ୍ତି ଜାତହୋଇ ॥
ସମ୍ଭୂତ ହୁଅନ୍ତି ଯେ ନିତ । ଉତ୍ପତ୍ତି ପ୍ରଳୟ ହୁଅନ୍ତି ॥
ସେ ଜଗନ୍ନାଥ ମାତା ପିତା । ବେଦ ତତ୍ତ୍ୱ ବ୍ରହ୍ମାଣ୍ଡ କର୍ତ୍ତା ॥
ସଚରାଚରେ ବ୍ୟାପିଅଛି । ସେ ମୂଳ ଦେବତା ହୋଇଛି ॥
ଚର ବୋଲିଣ ଯେତେ ଛନ୍ତି । ଜଗତେ ପାଦପ କ୍ଷେପନ୍ତି ।୬୦।

ଅଚର ଚର ନ ପାରନ୍ତି । ସ୍ଥାବର ଜଙ୍ଗମ ବୋଲାନ୍ତି ॥
ସମସ୍ତ ଠାବରେ ଯେ ସେହି । ରୂପରେ ଅତଯାତ ହୋଇ ॥
ଏମନ୍ତ ଯେହୁ ଅସ୍ମାବ୍ରହ୍ମ । ସେହିଟି ଜଗତ କାରଣ ॥
ଗର୍ଭରେ ଅଶେଷ ଯାହାର । ପୂର୍ଣ୍ଣ ହୋଇଛି ଏ ସଂସାର ॥
ସକଳ ଶରୀରେ ଅଛଇ । ପ୍ରାଣ ସ୍ୱରୂପେ ବସିଥାଇ ॥
ସକଳ ଦେଖଇ ନୟନ । ତାଙ୍କୁ ନ ଦେଖେ ଅନଜଣ ॥
ସ୍ୱରୂପଟେ ଲୀଳା କରୁଥାଇ । ସେହିଁ ଜଗତ ଭବଗ୍ରାସୀ ॥
ଏମନ୍ତ ଅସ୍ମା ଯେ ଈଶ୍ୱର । ବେଦ ପୁରାଣ ଶାସ୍ତ୍ରାନ୍ତର ॥
ଏଥିରେ ଗୋଚର ନୁହଇ । ଅଗୋଚର ରୂପ ଅଟଇ ॥
ଅମପା ନ କେ ମାପି ପାରବ । ଭକତଜନ ମନେ ଠାବ ।୭୦।
ଭକ୍ତଙ୍କ ଗୋଚରେ ରହିଛି । ଏଣୁ ନିର୍ବିକାର ହୋଇଛି ॥
ଅପଙ୍କୁ ଆପଣେ ନ ଦେଖି । ଯେଣୁ ହୋଇଛି କର୍ମ ସାକ୍ଷୀ ॥
ବେଦର ଅଛଇ ବିକାର । ଏଣୁ ହୋଇଲା ଅଗୋଚର ॥
ଅଦେଖା ରୂପ ସେ ଅଟଇ । ଦେଖିଲେ କେ ଛାଡ଼ ପାରଇ ॥
ଠୁଳ ଶୂନ୍ୟରୁ ଅଲଗାରେ । ଅଛି ଲାଗିନାହିଁ କାହିଁରେ ॥
ସେ ଅସ୍ମା ବ୍ରହ୍ମ ଆଦ୍ୟ ଅନ୍ତ । କେ କର ପାରବ ତଦନ୍ତ ॥
ଏଣୁ ପ୍ରକୃତ ଭ୍ରମମତେ । ପ୍ରାଣିଏ ବସୁଛ ଜଗତେ ॥
ଶାସ୍ତ୍ରମାନେ ଶାସ୍ତ୍ରପଥରେ । ବେଦାନ୍ତ ଭୁଲିଲେ ବେଦରେ ॥
ଯୋଗୀଏ ଯୋଗମାର୍ଗେ ଭ୍ରମି । କେବଳ ହେଲେ ପଥଶ୍ରମୀ ॥
ସାଧକେ ସିଦ୍ଧି କ ବାଞ୍ଛିଲେ । ତପିଏ ତପରେ ଭୁଲିଲେ ॥
କର୍ମୀଏ ଭୁଲିଗଲେ କର୍ମେ । ଗତ ଆଗତ ପଥଶ୍ରମେ ॥
ତୀର୍ଥବାସିମାନେ ତୀର୍ଥରେ । ଭ୍ରମି ବୁଲି ମଲେ ଶ୍ରମରେ ॥
ବେଦାର୍ଥୀ ବିଦ୍ୟାରେ ଭୁଲିଲେ । ପଣ୍ଡିତେ ବାଦ କର ମଲେ ॥
ଆତ୍ମାର ଆଦ୍ୟଅନ୍ତ ବୁଝି । ନ ପାଇ ମଲେ ଖୋଜଖୋଜ ॥
ଜପିଏ ଜପମାର୍ଗେ ଥାଇ । ମିଥ୍ୟାରେ ଆଡ଼ମ୍ବ ଦେଖାଇ ॥
ଝୁଲି ମାଳ ଧର ଗଡ଼ାଇ । ପ୍ରାଣିଙ୍କୁ ଭଣ୍ଡିବାର ପାଇଁ ॥

ବୋଲ୍ ଯେ ଥାନ୍ତି ଆମ୍ଭେ ତହିଁ । ଲକ୍ଷକ ନାମ ସଖ୍ୟା ନୋହି ॥
ଭଜନ ନୋହିଲେ ଆମ୍ଭର । କେତେବେହେଁ ନ ଭକ୍ଷିବୁ ନୀର ॥
ଦ୍ୱାଦଶ ତିଳକ ଚଢ଼ାଇ । ଛାପା ସର୍ବାଙ୍ଗ ହୋଇଥାଇ ॥
ରଇତନ କଣ୍ଠିକ ସାଜ । ମିଛେହେଁ ଥାନ୍ତି ଆଖିବୁଜ ।୧୦।
ଜ୍ଞାନୀଏ ଜ୍ଞାନମାର୍ଗେ ରତ । ନ ବୁଝି ଜ୍ଞାନର ଯେ ତତ୍ତ୍ୱ ॥
ଧ୍ୟାନୀ ଜନମାନେ ଧ୍ୟାନରେ । ଆଦ୍ୟନ୍ତ ନ ପାଇ ଭୁଲିଲେ ॥
ଅଶେଷ ମହିମା ଯାହାର । ସ୍ଥୂଳ ସୂକ୍ଷ୍ମ ଜ୍ୟୋତିରୂପର ॥
ଭକ୍ତର ଭାବେ ବନ୍ଧା ହୋଇ । ଭକ୍ତର ଅଧୀନ ଅଟଇ ॥
ଭକ୍ତ ତାହାର ନିଜ ଧନ । ଭକ୍ତ ଯେ ତାହାର ଜୀବନ ॥
ଭକ୍ତର ମାତା ପିତା ହୋଇ । ଭକ୍ତକୁ କ୍ଷଣେ ନ ଛାଡ଼ଇ ॥
ଭକ୍ତର ପାଇଁ କରେ ଚିନ୍ତା । ସେ ଅଇଶ୍ୱର୍ଯ୍ୟ ବରଦାତା ॥
ସେ ଭକତର ଅପମାନ । କେବେ ନ ସହେ ଭଗବାନ ॥
ନିରତେ ଭକ୍ତକୁ ଆବୋରି । କରେଣ ଶଙ୍ଖ ଚକ୍ରଧାରୀ ॥
ଭକ୍ତକୁ ବିପତ୍ତି ହୋଇଲେ । କେବେ ନ ସହେ ପ୍ରଭୁ ଭଲେ ॥
ପତିତ ପାବନର ବାନା । ଭବ ଭୟକୁ ବଜ୍ରସେଣ୍ଟା ॥
ଭକତ ବନ୍ଧୁ ନାମ ତାର । ଭକତ ପାଦ ହୃଦେ ଧାର ॥
କରଣ ଅଛଇ ନିରତେ । ଭକ୍ତର ଆଜ୍ଞାକୁ ସନ୍ତତେ ॥
ଅବଜ୍ଞା କେବେହେଁ ନ କରି । ଖଟଣ ଥାଇ ଭୃତ୍ୟପରି ॥
ଭକ୍ତର ଭାବ ପାଇକରି । ବୈକୁଣ୍ଠ ଛଡ଼ଇ ପାଶୋରି ॥
ଭକ୍ତର ଚରଣ ରେଣୁର । ଆଶା ଥାଇ ଭଗବାନର ॥
ଚଉଦ ଭୁବନେ ନ ଥାଇ । ଭକ୍ତର ହୃଦପଦ୍ମେ ରହି ॥
ଭକ୍ତର ସଙ୍ଗେ ଖେଳାକରି । ବାଳକ ବାଳକାର ପରି ॥
ଭକ୍ତର ଉଚ୍ଛିଷ୍ଟ ଖାଇଣ । ଗରିଷ୍ଠ ହୋଏ ନାରାୟଣ ॥
ଅନନ୍ଦ ମୋଦ ନିତ୍ୟେ ଭରି । ଖେଳ ଯେ ଖେଳଇ ଶ୍ରୀହରି ।୧୧।
ଶୁଣ ହୋ ମନ ମୋ ବଚନ । ଭକ୍ତର ଭାବେ କର ମନ ॥
ଭଗବାନ ପାଦପଦ୍ମକୁ । ପାଇଣ ପିଇବୁ ସୁଧାକୁ ॥

ଆଉ ଅନ୍ୟମାର୍ଗେ ଗମନ । ନ କର ଏ ତତ୍ତ୍ୱବଚନ ॥
ଭକ୍ତି ଏ ସଂସାରେ ପନ୍ଥା । ଆଉ ସକଳ ଅଟେ ମିଥ୍ୟା ॥
ଭକତ ନ କରଣ ଭ୍ରମେ । ବୁଲୁଅଛନ୍ତି ପ୍ରାଣିମାନେ ॥
ସୁଜନ ସୁସଙ୍ଗ ସୁପନ୍ଥା । ଗ୍ରହଣ ପଣ୍ଡିଛନ୍ତି କାଷ୍ଠା ॥
ବଚାଭକ୍ତିରେ କେ କୃଷ୍ଣଙ୍କୁ । ପାଇବ ନ ଥସେ ମନକୁ ॥
ଶୁକ ସନକ ସନାତନ । ବ୍ରହ୍ମା ଶିବ କରନ୍ତି ଧାନ ॥
ବ୍ୟକ୍ତ ନୁହଇ ସେ ପୁରୁଷ । ଅବ୍ୟକ୍ତ ମହିମା ଅଶେଷ ॥
ସ୍ଥୂଳରେ ଉହାର ନାହାର । ତେଣୁ ଅଜ୍ଞାତ ଏ ସଂସାର ।୧୬୦।
ଆତ୍ମା ଜ୍ଞାନ ଅତି ଗୁପତ । ସୂକ୍ଷ୍ମ ବ୍ରହ୍ମ ଜ୍ୟୋତି ତଦନ୍ତ ॥
ପରମ ଆତ୍ମା ସ୍ୱରୂପରେ । ପରିପୂର୍ଣ୍ଣ ସ୍ଥିରଖାଳରେ ॥
ବେଦ ବେଦାନ୍ତେ ତାର ଅନ୍ତ । ନ ମିଳେ ଏଣୁ ସେ ଅନନ୍ତ ॥
ଅଜ୍ଞାନେ ଅନ୍ତ ନ ମିଳଇ । ଅଦୃଶ୍ୟ ଦୃଶ୍ୟ ସେ ନୁହଇ ॥
ଯୋଗ ଧ୍ୟାନରେ ଭ୍ରମି ବୃଥା । ଅଗମ୍ୟ ଗମ୍ୟର ବଂବସ୍ଥା ॥
ଅସ୍ପୃଷ୍ଟ ନୋହେ ସ୍ପୃଷ୍ଟମନ୍ତ । କୀଟୁ ବ୍ରହ୍ମଯାଏ ସମସ୍ତ ॥
ସ୍ଥାନରେ ବ୍ୟାପି ରହିଥାଇ । ଶଉଷ୍ଟ ଶଉଚ ତା ନାହିଁ ॥
ଜଗତେ ନିରଞ୍ଜନ ଗୋପ୍ୟ । ରଞ୍ଜନ ନୋହେ ନିର୍ବିକଳ୍ପ ॥
ବେଦର ରୂପ ତ୍ରିଗୁଣନ୍ତ । ଅଲଗା ହୋଇଣ ଅଛଇ ॥
ମନ ସ୍ୱରୂପରେ ବିଶ୍ରାମ । ଶବଦ ବ୍ରହ୍ମ ନିଜନାମ ॥
ଆକାଶଠାରୁ ସେ ଅଲଗା । ନାମ ସବଂପରେ ତା ଯାଗା ॥
ଅସତ୍ୟ ବୋଲେ ଅଣାକାର । ରୂପ ଶବଦ ଭେଦ ତାର ॥
ନିରକ୍ତ ଘରେ ନିସ୍ୱକାର । ଶବଦ ନାହିଁ ଯେ ସେଠାର ॥
ଏ ଆତ୍ମା ବ୍ରହ୍ମର ନିର୍ଣ୍ଣିତ । ସେଠାରୁ ଏ ଜଗତ ଦେହ ॥
ରୂପ ରସ ଗନ୍ଧ ଶବଦ । ସ୍ୱରସ ଆକାଶର ଭେଦ ॥
ତା ନାମ ଅଲେଖ ବୋଲାଇ । ସଂଖ୍ୟାରେ କେ ଲେଖିପାରଇ ॥
ଅବାୟୁପୁରୁଷ ବୋଲାଇ । ବାୟୁ ତାହାଙ୍କୁ ଭେଦ ନାହିଁ ॥
ଶୂନ୍ୟରେ ମୂର୍ତ୍ତି ରହିଅଛି । ଅଜ୍ଞାନେ ନ ଦିଶଇ କିଛି ॥

ଅମୂର୍ତ୍ତି ନୁହଇ ସେ ମୂର୍ତ୍ତି । ପରମ ପଦ ସେ ବୋଲାନ୍ତି ॥
ଅକୁଳ ବୋଲନ୍ତେ ସେ କୁଳ । ନ ପାଇଲେ ଯୋଗୀ ସକଳ ॥
ମୂଳ ବୋଲନ୍ତେ ମୂଳ ନାହିଁ । ବେଦ ପୁରାଣେ ତା ନ ପାଇ ॥
ଅନାଦ ବୋଇଲେ ତା ନାଦ । ନୁହଇ ଶବଦର ଭେଦ ॥
ଶବ୍ଦଭେଦମାନେ ଶବ୍ଦରେ । ଭେଦୁଥାନ୍ତି ବୁଥାଣ୍ଡମରେ ॥
ଏମନ୍ତ ଅଟଇ ସେ ବ୍ରହ୍ମ । ଶୁଣ କହିବା ତା ମରମ ॥
ଲେଖା ବାୟୁ ଶୂନ୍ୟମୂର୍ତ୍ତିର । ପରମ ଆତ୍ମା କୁଳ ମୂଳ ॥
ଏ ବ୍ରହ୍ମଜ୍ଞାନ ସମାଜରେ । ବିଦ୍ୟା ନାହିଁ ତପସ୍ୟା କଲେ ॥
ଏ ଯେତେ କର୍ମ ଦାନପୁଣ୍ୟ । ଭେଟ ନ ପାଇ ବ୍ରହ୍ମଜ୍ଞାନ ॥
ଭୂତ ଭବିଷ୍ୟ ବର୍ତ୍ତମାନ । ନୁହଇ ବ୍ରହ୍ମକୁ ଭେଦଣ ॥
ଶାସ୍ତ୍ରମାନେ ତହିଁ ଝରନ୍ତି । ବକ୍ତ୍ରରେ ଶବ୍ଦ ଜାତ ହୋନ୍ତି ॥
ଶବଦ ଯେତେକ ଶାସ୍ତ୍ରରୁ । ପ୍ରକାଶ ଅକ୍ଷର ମୁଖରୁ ॥
ଏ ବେଦ ମୁଖରୁ ଝରନ୍ତି । ଉଚ୍ଛିଷ୍ଟ ଶାସ୍ତ୍ର ବୋଲାବନ୍ତି ॥
ଶବଦ ଯେଉଁଠାରୁ ଜନ୍ମ । ଅଣ ଉଚ୍ଛିଷ୍ଟ ତାର ନାମ ॥
ସେ ପୁରୁଷକୁ ବ୍ୟକ୍ତକର । ଅନ୍ତ ନ ପାଏ ଏଣୁକର ॥
ସେ ଅନାମୟ ଆତ୍ମା ବ୍ରହ୍ମ । ଜରାଦ ରୋଗ ମୃତ୍ୟୁ ଜନ୍ମ ॥
ଅବ୍ୟକ୍ତ ପୁରୁଷ ବ୍ୟକତ । ନୁହଇ ଜନ୍ମ ମୃତ୍ୟୁହେତ ॥
ଶବ୍ଦ ଯେଉଁଠାରୁ ଝରଇ । ଅନାହତ ପୁର ବୋଲାଇ ॥
ସେ ସ୍ଥାନ ବୋଲାଇ ଅଜପା । ଭେଦ ପାରିଲେ ହୋଏ ମପା ॥
ଜପା ଅଜପା ସେ ବୋଲାଇ । ଜପିଲେ ପାଇବୁ ତୁ କାହିଁ ॥
ଅବ୍ୟକ୍ତ ରୂପରୁ ଅଜପା । ଶୁଣ କହିଲି ମନୁ ନୃପା ॥
ଅଜପା ମନ୍ତ୍ର ତାକୁ କହି । ଅବ୍ୟକ୍ତ ଭଜନଟି ସେହି ।୧୭୦
ଅଜପା ହେବାରୁ ଯେ ସେହି । ଜପ କରନ୍ତି ନରସାଇଁ ॥
ଅବ୍ୟକ୍ତୁ ଆସି ବ୍ୟକ୍ତହୋଇ । ତେଣୁ ଜପ ତପ ଲାଗଇ ॥
ବ୍ୟକତ ହୋଇ ପ୍ରକାଶିଲା । ତେଣୁ ଜପ ତା ନାମ ହେଲା ॥
ଜିହ୍ୱାରେ ଯେତେକ ତା ନାମ । ସେହିଟି ବ୍ୟକତ ଭଜନ ॥

ଦନ୍ତ ଓଷ୍ଠ ଜିହ୍ୱା ସନ୍ଧିରେ । ଅଜପା ଜପେବୁ କାହିଁରେ ॥
ଏକା ପାର୍ବତୀ ଦେବୀ ସତ । ଅଜପା ମନ୍ତ୍ରକୁ ଜପନ୍ତ ॥
ଅଜପା ମନ୍ତ୍ରକୁ ପାଇଲେ । କାଳର ମୃତ୍ୟୁ ଉବୁରଲେ ॥
ଅସ୍ଥା ଜ୍ଞାନଙ୍କର ଭଜନ । ଗୋଚର ହୋଏ ଶୁଣ ମନ ॥
ଅନ୍ୟ ତା ପାଇବନ୍ତି କାହିଁ । ବ୍ୟକତ ଭଜନ ନୁହଇ ॥
ଏ ଅଦ୍ଧ ବେଦ ଯେ ପୁରାଣ । ଶବଦୁ ଜାତ ଏହୁ ମାନ ॥
ଶବ୍ଦ ଭେଦରୁ ଜାତ ହୋଇ । ଶାସ୍ତ୍ରକୁ ଗୋଚର ଯେ ନାହିଁ ॥
ଏ ଜପ ତପ ଜ୍ଞାନ ଧାନ । ଶବଦୁଁ ହୋଇଲ ଏ ଜନ୍ମ ॥
ଶବଦୁ ହୋଇଲା ଉତ୍ପନ୍ନ । ତେଣୁ ଶବଦ ବ୍ରହ୍ମ ନାମ ॥
ତହିଁର ପରେ ନାହିଁ ଜ୍ଞାନ । କହିଲି ବ୍ରହ୍ମର ମରମ ॥
କେବଳ ପରମ ଧାମରେ । ମିଳଇ ଗୁରୁ କୃପାକଲେ ॥
ଶ୍ରୁତି ଯେ ବହୁତ ମାର୍ଗରେ । ଭୁଲାଇ ଭଣ୍ଡିଛି ସଂସାରେ ॥
ଶାସ୍ତ୍ରକୁ ଭିନ୍ନଶାସ୍ତ୍ର କରି । ଭ୍ରମରେ ଜୀବ ମରେ ବୁଲି ॥
ସ୍ମୃତି ବହୁ କଳ୍ପିବାରୁ । ଏଣୁ ବୋଲାଏ କଳ୍ପତରୁ ॥
ଶ୍ରୁତି ସ୍ମୃତି ବେଦମତ । ସଂସାରେ ଶ୍ରେଷ୍ଠ ଏ ବିଦିତ ॥
ଶ୍ରୁତି ସ୍ମୃତି ବୁଦ୍ଧିଙ୍କର । ମଧ୍ୟେ ଗୁରୁବଚନ ଧର ॥
ଶ୍ରୁତି ସ୍ମୃତି କ ବୁଝାଇ । ଗୁରୁ ଯେ ପାରେ ଶିଷ୍ୟଙ୍କହି ॥
ସଂସାର ମଧ୍ୟେ କେ ସମର୍ଥ । ଗୁରୁ ନ ସେବି ପାଏ ତତ୍ତ୍ୱ ॥
ଗୁରୁ ହର୍ତ୍ତା କର୍ତ୍ତା ବୋଲାଇ । ଜୀବନେ ମୁକ୍ତିପଥ ଦେଇ ॥
ଗୁରୁ ଅନ୍ଧକୂପୁ ଉଦ୍ଧାରେ । ସେ ଜ୍ଞାନନେତ୍ର ଦେଇପାରେ ॥
ଏ ଜୀବେ ଗୁରୁ ଯେ ଧାରଣ । କରି ସେ ପାରଇ କାରଣ ॥
ଗୁରୁ ସର୍ବଭୂତରେ ଅଛି । ଜଗତ ବାହ୍ୟାନ୍ତରେ ସାକ୍ଷୀ ॥
ଗୁରୁ କୃପାକଲେ କଷ୍ଟିତ । ଭବରୁ ହୋଇବୁ ବଞ୍ଚିତ ॥
ଗୁରୁ ବ୍ରହ୍ମ ଏହୁ ନାବର । ଗୁରୁ ହୋଇଛି କର୍ଣ୍ଣଧାର ॥
ନାମ ନଉକା ସଙ୍ଗେ ଥାଇ । ଭବ ବୁଡ଼ି ପାର କରଇ ॥
ମହିମା କେ କହେ ଗୁରୁର । ଯାର ମହିମା ଅକୂପାର ॥

ଗୁରୁ ପାଦାମ୍ବୁଜରୁ ବନ୍ଦ । ଛେଦେ ନବଧାର ପାଇ ॥
ଗୁରୁଙ୍କୁ ଅଟେକର ବେଗି । ହୋଇବୁ ତୁ ଅମୂର ଭେଗି ॥
ଅମୃତ ଯେବେ ଦେଦେ ଲାଗି । ତେବେ ପାରବୁ ବ୍ରହ୍ମ ଜାଗି ॥
ଯେ ବ୍ରହ୍ମ ଜୀବେ ପରପୂର୍ଣ୍ଣ । କଳ୍ପବୃକ୍ଷ ତାହାର ନାମ ॥
ଅଗମ ନିଗମ ପଦର । ପଲ୍ଲବ ଫୁଟେ ପଦ୍ମଫୁଲ ॥
ତହିଁରୁ ମାୟାଏ ଜନମ । ଅଧିଆତ୍ମା ତାହାର ନାମ ॥
ସେ ଅଧିଆତ୍ମା ନବ ଦୀପ । ଅନ୍ଧାର ଅଲୁଅ ସ୍ୱରୂପ ॥
ସେ ଅଧି ଆତ୍ମାରୁ ବ୍ରହ୍ମାଣ୍ଡ । ସର୍ଜନା ହେଲା ନବଖଣ୍ଡ ॥
ଅଦ୍ୟ ପ୍ରାନ୍ତକରୁ ବୁଝାଇ । କହୁଛି ଶୁଣ ମନଦେଇ ॥
ସମୁଦ୍ରରୁ ଯେସନେ ଫେନ । ହୁଅଇ ବୁଦ୍‌ବୁଦା ମାନ ॥
ସ୍ଥିତି ଉତ୍ପତ୍ତି ସେ ପ୍ରଳୟେ । ସମୁଦ୍ର କାହିଁକି ନ ଯାଏ ॥
ଯେ ଅତ୍ମା ଉଭବ ହୁଅଇ । ସ୍ଥିତି ଉତ୍ପତ୍ତି ପ୍ରଳେ ହୋଇ ॥
ଯେ ଅତ୍ମାବ୍ରହ୍ମ ନିରମୟ । ସେ ସଦା ପରପୂର୍ଣ୍ଣେ ଅସ୍ତୁ ॥
ପରମ ଅତ୍ମାର କରଣ । ସେ ଅଧିଅତ୍ମା ଜାଣ ମନ ॥
ଅଧି ଅତ୍ମାରୁ ବାୟୁ ହୋଇ । ବାୟୁରୁ କରଣ ଜନ୍ମଇ ॥
କରଣୁ ଶବ୍ଦ ହେଲେ ଜାତ । ଶୁଣିମା ସୁଜ୍ଞାନୀ ପଣ୍ଡିତ ॥
ଶବଦ ଭେଦ ମୁଖେରେଣ । ହୋଇଲା ଶାହାସ୍ତ୍ର ପୁରାଣ ॥
ବ୍ରହ୍ମାଣ୍ଡେ ବିଖ୍ୟାତ ହୋଇଲା । ବେଦ ଉଚ୍ଛିଷ୍ଟ ବୋଲାଇଲା ॥
ପରମ ପଦ ଯେ ଉଚ୍ଛିଷ୍ଟ । ନୁହଇ ସର୍ବଠାରେ ଶ୍ରେଷ୍ଠ ॥
ଏଣୁ ସେ ଏହି ସେହି ମୁହିଁ । ଏ ଭେଦା ଭେଦ ତାର ନାହିଁ ॥
ଏ ଭାବେ ବ୍ରହ୍ମଜ୍ଞାନୀ ଜନ । ବିଶ୍ୱର ସାର ଉଦ୍ଧାରଣ ॥
ବ୍ରହ୍ମ କର୍ମ ଧର୍ମ ଜାଣିଲେ । କର୍ମ ବନ୍ଧନରୁ ଫିଟିଲେ ॥
ଗୋଷ୍ଠିରେ ବସିଣ କୈବଲ୍ୟେ । ଭୁକ୍ତିଟେ ମୁକ୍ତିକି ପାଇଲେ ॥
ପାଇଲେ ଏ ନିର୍ବାଣ ପଥ . । ଏ ବ୍ରହ୍ମଜ୍ଞାନୀଙ୍କର ମତ ॥
ବ୍ୟାସ ବଶିଷ୍ଠାଦି ସନକ । ଏ ବେଦବାଦ ଯେତେ ଭକ୍ତ ॥
ଏ ବ୍ରହ୍ମଜ୍ଞାନକୁ ଭଜିଲେ । ବ୍ରହ୍ମରୂପକୁ ଲକ୍ଷ୍ୟ କଲେ ॥

କୋଟି ବ୍ରହ୍ମଣ୍ଡ ଯା କରେଣ । ଢୋଟିଛି ଏ ଜ୍ଞାନ ଲୋଚନ ॥
ଶୁଣି ସନ୍ତୋଷ ହେଲା ଜୀବ । ଏ ଆତ୍ମା ବ୍ରହ୍ମଜ୍ଞାନ ଭାବ ॥
ଜୀବକୁ ପରମ ବୁଝାଇ । ଉଦ୍ଧବେ ମହାପ୍ରଭୁ କହି ॥
ବସୁଦେବେ ନାରଦ ଭଣି । ଅମ୍ବିକା ଅଗେ ଶୂଳପାଣି ।୨୦
ଯଦୁ ରାଜାଙ୍କ ଅବଧୂତ । ନିମି ଅଗେ ନବ ସୌନକ ॥
ଭିକ୍ଷା ପ୍ରବନ୍ଧରେ କହିଲେ । ଆତ୍ମାର ଜ୍ଞାନ ବୁଝାଇଲେ ॥
ସାଧୁଜନେ ଦୋଷ ମୋହର । ନ ଧର ମୁଁ ମୂର୍ଖ ପାମର ॥
କଣ୍ଠେ ବସିଣ ଗୁରୁ ମୋର । କହିଲେ ନିଗମ ବଗୃର ॥
ତେଣୁ ହସିଲା ଯାହା ପଦ । ଲେଖିଲି କରୁଣ ପ୍ରବନ୍ଧ ॥
ଗୁରୁଙ୍କ କୃପା ନୋହିଥିଲେ । କାହିଁ ଏ ପଦ ହଟେଇ ବୋଲେ
ଏଣୁ ନିଗମ ଗୀତା ରସ । ସାଧୁଙ୍କୁ ଅଟଇ ପୀୟୁଷ ॥
ମୂର୍ଖଙ୍କୁ ବାଳୁକୁ ବାଳକୁ । ଶୁଣିଲେ ପଳାଇବେ ଦୂରୁ ॥
ଯେ ପ୍ରାଣୀ ଦାମ୍ଭିକ ଜୀବନ । ତାହାକୁ ଲାଗେ ସ୍ୱାନମାନ ॥
ଗର୍ବିତା ହୃଦସ୍ତୁକୁ ଯେରେ । ଏ ତୁଚ୍ଛ ହଣଇ ତାହାରେ ॥
ମମତା ମୁଖରେ ବଖାଣେ । ଆତ୍ମାର କଥାକୁ ନ ଜାଣେ ॥
ଯେବେ ଅଧେହେଁ ନ ଜାଣଇ । ମହାନ ବଚନ କାଟଇ ॥
ବୋଲଇ ଏ କିସ ଜାଣିବ । ରହସ୍ୟ ବଚନ କହିବ ॥
ସଜ୍ଜନେ ଆତ୍ମାର ଯେ ଜ୍ଞାନ । ଜାଣ ତୁମ୍ଭଙ୍କୁ ମୋର ମାନ୍ୟ ॥
ତୁମ୍ଭର ପାଦରଜ ବୋଲି । ଅନନ୍ଦେ ବୋଲୁଥିବି ହରି ॥
ତୁମ୍ଭେ ମୋହର ପ୍ରାଣପ୍ରିୟ । ତୁମ୍ଭର ହତେ ମୋର ଦେହ ॥
ତୁମ୍ଭର ହତେ ମୁହିଁ ଯିବ । ଶ୍ରୀହରି ଚରଣେ ଖଟିବ ॥
ଏତେକ ମାଗୁଣି ମୋହର । ସଜ୍ଜନେ ମୋତେ ଦୟାକର ॥
ଧ୍ୟାଇ ଶ୍ରୀମନ୍ତଙ୍କ ପାରସ୍ୟ । କହେ ବିପ୍ର ମଦନ ଦାସ ॥
ଦୁଇଶତ ଚଉଳିଶ ପଦ । ଦ୍ୱିତୀୟ ଅଧ୍ୟାୟ ପ୍ରବନ୍ଧ ॥

ଇତି ଶ୍ରୀ ନିଗମଗୀତା ଯୋଗଶାସ୍ତ୍ରେ ବ୍ରହ୍ମବିଦ୍ୟାୟାଂ ପରମହଂସ
ସଂହିତାୟାଂ ବୈୟାସିକ୍ୟାଂ ଆତ୍ମାଜ୍ଞାନ ଧର୍ମକଥନେ
ମଦନ ଦାସ ବିରଚିତେ ନାମ ଦ୍ୱିତୀୟୋଽଧ୍ୟାୟଃ ।

# ତୃତୀୟ ଅଧ୍ୟାୟ ।

ନମୋ ତୁଭ୍ୟଂ ଭବ୍ୟସିଂହ ପ୍ରଣବ ବ୍ୟାକୃତରପି ।
କଥମସ୍ୟ ମହାଭାଗ ଓଁକାର ପୂର୍ବ ନିର୍ଣ୍ଣୟଃ ॥

ମନ ତର୍କେବେ ଚଇତନ । ଗୁରୁ ଚରଣେ କର ମାନ୍ୟ ॥
ଆତ୍ମା ଜ୍ଞାନ ଧର୍ମ କହିଲ । ସମସ୍ତ ଗତ ପଥ ଦେଲ ॥
ପାଇଲି ଏ ପରମ ତତ୍ତ୍ୱ । ଭଜାଣି ପୂର୍ବର ଦୁଷ୍କୃତ ॥
ଧନ୍ୟ ମାତା ପିତା ମୋହର । ତାଙ୍କ ପୁଣ୍ୟରୁ ମୋ ଶରୀର ॥
ତୁମ୍ଭ ଶ୍ରୀକୃପାରୁ ତରିଲି । କେତେ ଯେ ଧର୍ମ କହିଥିଲି ॥
ତ୍ରିତାପେ ଦେହ ଦାହ ମୋର । ଅଗ୍ନି କୁଣ୍ଡେ ପଡ଼ ଶରୀର ॥
କରୁଣାରସ ବୃଷ୍ଟି କର । ହେ ଗୁରୁ ଯେଣେ ଯିବ ତର ॥
ଯେଣୁ ହେଲ ତୁମ୍ଭେ ପ୍ରସନ୍ନ । ପାଇଲି ମୁଁ ଜ୍ଞାନଲୋଚନ ॥
ନିଗମ ଗୀତାକୁ ବଖାଣ । କର ପଦନ୍ଦ କର କର୍ଣ୍ଣ ॥
ଆତ୍ମାର ନିର୍ଣ୍ଣୟ କହିଲ । ସର୍ବ ସଂଶୟ ଫିଟାଇଲ ॥
ଏ ଓଁ କାର ନିର୍ଣ୍ଣୟ କହ । ରୂପ ବର୍ଣ୍ଣ ଭେଦାଇ ଦିଅ ॥
ପଶୁଛି ଚରଣେ ଶରଣ । କହ ଅଦ୍ୟ ପ୍ରାନ୍ତ କରଣ ॥
ମନର ବିକଳ ଦେଖିଣ । କହନ୍ତ ଗୁରୁ ଚଇତନ ॥
ମହାଶୂନ୍ୟର ତତ୍ତ୍ୱ ଥୋଇ । ଅନାହତ ପୁରେ ଚେତାଇ ॥
ଶୁଣ ହୋ ମନ ସାବଧାନ । ପ୍ରଣବର ଯେ ଆଦିଜନ୍ମ ॥
ଯେଉଁ କର୍ମରୁ ସେ ଉତ୍ପତ୍ତି । ପ୍ରଚ୍ଛନ୍ନ କରଣ କହନ୍ତି ॥
ଆତ୍ମା ବୋଲି କହୁଛି ଯେହୁ । ସେ ପୂର୍ଣ୍ଣାନନ୍ଦ ଜ୍ୟୋତିର୍ମୂର୍ତ୍ତି ॥
ସେ ଆତ୍ମାବ୍ରହ୍ମ ଜ୍ୟୋତିର୍ମୟ । ଫିଟାଇ ଦେଲି ତୋ ସଂଶୟ ॥
ତହୁଁ ଅଧିଆତ୍ମା ଉତ୍ପତ୍ତି । ସଚରାଚରେ ସେହୁ ବ୍ୟାପି ॥
ଦିର୍ଘ୍ୟାତ ବୀଜ ସ୍ୱରୂପରେ । ଘଟରେ ନିଜରୂପ ଧରେ ॥
ସେ ଅଧିଆତ୍ମା ସମ୍ଭବଇ । ତହୁଁ ଯେ ଧ୍ୱନି ଜାତହୋଇ ॥
ତେଣୁ ଏ ଅଧିଆତ୍ମା ଯୋନି । ଜ୍ଞାନନେତ୍ରକୁ ଦିଶେ ଚେନି ॥

ତେଣୁ ଏ ନବଙ୍କ ଅନ୍ତଯାତ । ସ୍ୱଇଚ୍ଛା ମତେ ହୋଇ ବ୍ୟକ୍ତ ॥
ବିଷ୍ଣୁ ସହସ୍ର ନାମେ ଏହି । ପ୍ରକଟ ହୋଇଣ ଅଛଇ ॥
ସେ ଅମ୍ବାବ୍ରହ୍ମ ଏ ପୁରୁଷ । ମହତ୍ତ୍ୱଭିତରୁ ପ୍ରକାଶ ॥
ଏକରୁ ଅନେକ ହୋଇଲା । ତ୍ରିଲୋକୁ ଧ୍ୱନି ଜାତହେଲା ॥
ଏ ଅଧ୍ୱଅମ୍ବା ଜ୍ୟୋତିର୍ମୟି । ଧ୍ୱନିଟି ମୂର୍ଦ୍ଧନରୁ ହୋଇ ॥
ତହୁଁ ସେ ଓଁକାର ଜନ୍ମିଲା । ତହିଁରୁ ଶ୍ରୁବ ଜାତହେଲା ॥
ଏ ଜ୍ୟୋତିରଙ୍କରୁ ସମସ୍ତ । ହୋଇଣ ଅଛନ୍ତି ବ୍ୟକତ ॥
ସେହି ଜ୍ୟୋତିଙ୍କ ଅର୍ଦ୍ଧମାତା । ବୋଲନ୍ତି ତାଙ୍କୁ ଅର୍ଦ୍ଧମାତା ॥
ତହିଁରୁ ଓଁକାର ଉତ୍ପତ୍ତି । ବେଦ ପ୍ରଳୟ ହେଉଛନ୍ତି ॥
ଜ୍ୟୋତିରୁ ଅମ୍ବାଧ୍ୱନି ଜାତ । ତହିଁରୁ ଓଁକାର ଉକତ ॥
ଯେ ଧ୍ୱନି ସେହିଟି ଓଁକାର । ନାହିଁ ତାହାଙ୍କ ପରାପର ॥
ଓଁକାରୁ ବିନ୍ଦୁ ଅସିବାରେ । ସଂଯୁକ୍ତ ହୋଇଲା ନାଦରେ ॥
ଯହୁଁ ସଂଯୁକ୍ତ ବିନ୍ଦୁନାଦ । ତହୁଁ ଜାତ ହୋଇଲା ଶବଦ ॥
ଓଁକାର ଭେଦ ଶବଦକୁ । ଗୋଚର ନୋହେ ଭେଦିବାକୁ ॥
ଓଁକାର ଯେଉଁସ୍ଥାନୁ ହୋଇ । ଓଁକାରକୁ ତା ଜଣାନାହିଁ ॥
ଯୋଗେଶ୍ୱରମାନଙ୍କୁ ମାତ୍ର । ଜଣାଅଛି ଓଁକାର ତତ୍ତ୍ୱ ॥
ଓଁକାର ଜାଣି ଯୋଗୀହୋଇ । ଯୋଗିର ମତକୁ ଜାଣଇ ॥
ଯେଉଁ ସଚ୍ଚିଦାନନ୍ଦ ବ୍ରହ୍ମ । ଓଁକାର ତହୁଁରୁ ଜନମ ॥
କୋଟି କୋଟି ବ୍ରହ୍ମା ସେ ସ୍ଥାନ । କେବେ ନ ପାଇଲେ ମରମ ॥
କୋଟିକ କୋଟି ବିଷ୍ଣୁଗଲେ । ସେ କେବେ ଜାଣି ନ ପାରିଲେ ॥
ଅଲେଖା କେତେ ଇନ୍ଦ୍ରଗଲେ । କେବେ ତା ଭେଦ ନ ପାଇଲେ
ଓଁକାର ଜାଣିଲେ ଈଶ୍ୱର । ପାବଶ ଚରଣ କୋଳର ॥
ଶୁଣ ହେ ମନ ସାବଧାନ । ଅମପା ମାପ ପରମାଣ ॥
ନିଶ୍ଚୟ କହୁଛି ବୁଝାଇ । ବିନ୍ଦୁରୁ ସ୍ଥୂଳରୂପ ହୋଇ ॥
ନାଦ ବିନ୍ଦୁହୁଁ ସଂଯୁକ୍ତ । ହେବାରୁ ଶବଦ ସମ୍ଭୂତ ॥
ଶବ୍ଦରୁ ପ୍ରଣବ ହୋଇଲା । ବିନ୍ଦୁନାଦ ସମାନ ହେଲା ॥

ଅଭେଦ ଶକ୍ତି ସେ ବନ୍ଧନ୍ତି । ଶବଦମାନେ ଜାତ ହୋନ୍ତି ॥
ଏଣୁ ଏ ନାଦ ବିନ୍ଦୁ ଶବ୍ଦ । ପ୍ରଣବ ହୋଇଲା ଉଦ୍ଭବ ॥
ତହିଁରୁ ବୃତ୍ତାନ୍ତ ବୁଝାଇ । କହୁଛି ଶୁଣ ନରସାଇଁ ॥
ଶବଦ ବୋଲିକରି ଯାକୁ । ବିନ୍ଦୁର ସ୍ଥାନ ବୋଲି ତାକୁ ॥
ବିନ୍ଦୁ ବୋଲି ଯାହାକୁ କହି । ଜିହ୍ୱା ମାଝପରେ ଅଛଇ ॥
ନାଦବିନ୍ଦୁ ସମାଯୁକ୍ତରେ । ଅସଂଖ୍ୟ ଶବ୍ଦ ବାହାରିଲେ ॥
ଏକଇ ସୂର୍ଯ୍ୟର କିରଣ । ପ୍ରକାଶ ଚଉଦ ଭୁବନ ॥
ଅସ୍ତକାଳେ ଯେସନେ ସୂର୍ଯ୍ୟ । ହଜାଇ କିରଣର ତେଜ ॥
ସେରୂପେ ଧ୍ୱନି ହଜିଗଲେ । ଶବଦେ ନାଶହୋନ୍ତି ଭଲେ ॥
ଶବଦ ନିଶବ୍ଦରେ ରହି । ବୁଝିଥା ମନ ନରସାଇଁ ॥
ଶବ୍ଦରୁ ସମସ୍ତ ପୁରାଣ । ଶାସ୍ତ୍ର ହୋଇଛି ବଖାଣ ॥
ପଣ୍ଡିତେ ବୁଦ୍ଧି ଅନୁସାରେ । ଭିନ୍ନ ଭିନ୍ନ କରଣ ଦେଲେ ॥
ଏମନ୍ତ ଯେଉଁ ଶବ୍ଦ ହୋଇ । ତା ତତ୍ତ୍ୱ ନ ବୁଝି ଗୋସାଇଁ ॥
ଶାସ୍ତ୍ର ପଢ଼ି ସଦାକାଳ । କି ପ୍ରୟୋଜନ ହୋଏ ତାର ॥
ସେହି ଶବ୍ଦର ଗତାଗତ । ଯେ ଜାଣେ ସେହିଟି ପଣ୍ଡିତ ॥
ଶବ୍ଦକୁ ଭେଦ ନିଶବ୍ଦରେ । ରହେ ସାଧୁ ଜନ ମତରେ ॥
ଅପଣା ନିଜ ଶବ୍ଦଭେଦ । ନ ଜାଣି ପଢ଼ୁଛନ୍ତି ବେଦ ॥
ଗ୍ରନ୍ଥ ପଢ଼ି ଅର୍ଥ କହିଲେ । ପ୍ରାଣୀ ମନ ରଞ୍ଜନ କଲେ ॥
ଶବ୍ଦ ନ ବୁଝି ଯେଉଁଜନ । ଉତ୍ପତ୍ତି ପ୍ରଳୟର ସ୍ଥାନ ॥
ସ୍ଥିତିର ସ୍ଥାନ ଜାଣିନାହିଁ । ବୁଝ ତୁ ପଣ୍ଡିତ ସେ ନୋହି ॥
ପବିତ୍ର ପରମ ଓଁ କାର । ଏ ଅଟ୍ଟା ଶବଦ ବ୍ରହ୍ମର ॥
ବିନ୍ଦୁ ଜାତ ତାର ସୂତ୍ରରୁ । ଓଁ କାର ମାତ୍ରା ଏକାକ୍ଷରୁ ॥
ଧ୍ୱନି ସେହିଟି ପରଂତତ୍ତ୍ୱ । ଶବଦବ୍ରହ୍ମ ନାମ ଖ୍ୟାତ ॥
ଯେ ଯୋଗୀ ଓଁ କାରର ଗତି । ଅଗତ ପଥକୁ ଜାଣନ୍ତି ॥
ସେହି ପରମ ରୂପ ଚିନ୍ତି । ଅପଣା ହୃଦରେ ଦେଖନ୍ତି ॥
ଅପଣା ଘଟେ ଅପରୂପ । ଯେ ଦେଖେ ସେହି ଯୋଗୀକୁଳ

ବିଷୟା ବିଷେ ନୋହେ ଲିପ୍ତେ । ଓଁକାର ତତ୍ତ୍ୱେ ଭଜେ ଜାଗ ॥
ତାହାକୁ ଯୋଗାଧିପ ଜାଣି । ସେ ଯୋଗେଶ୍ୱରା ଶିରୋମଣି ॥
ଓଁକାର ଭେଦ ଅଗୋଚର । ଶ୍ରୀଗୁରୁଙ୍କୁ ଏକା ଗୋଚର ॥
ଗୁରୁ ନ କହିଲେ ତା ତତ୍ତ୍ୱ । କାହୁଁ ଜାଣେ ପାଷାଣ୍ଡ ମତ ॥
ଗୁରୁଟି ଓଁକାର ଅଟଇ । ଗୁରୁଟି ଏକାକ୍ଷର ହୋଇ ॥
ଗୁରୁ ପରମ ସ୍ୱରୂପରେ । ଗୁରୁର କରୁଣା ନୋହିଲେ ॥
ନୋହିଲେ ସର୍ବେ ବଣାହୋଇ । ଓଁକାର ତତ୍ତ୍ୱ ନ ମିଳଇ ॥
ଗୁରୁଟି ଅଟଇ ଯେ ଜ୍ଞାନ । ଗୁରୁ ଅଟଇ ସିନା ଧ୍ୟାନ ॥
ଗୁରୁରୂପଟି ଗୁରୁ ତପ । ଯନ୍ତ୍ର ମନ୍ତ୍ର ନାମ ସ୍ୱରୂପ ॥
ଗୁରୁଟି କାରଣର ତତ୍ତ୍ୱ । ଗୁରୁଟି ଅଟେ ଜ୍ଞାନଦୀପ ॥
ଭବାନ୍ଧ କୂପରୁ ଉଦ୍ଧରେ । ସକଳପାପ ଦେଶାନ୍ତରେ ॥
ନ ଜାଣିଲେ ଯେ ଗୁରୁଜ୍ଞାନ । ସେହିଟି ହୋଇଲେ ଅଜ୍ଞାନ ॥
ଅଧମପଣେ ଦିନ ନେଲେ । କୁଟୁମ୍ବ ପୋଷି ବନ୍ଧହେଲେ ॥
ଶୁଣ ହେ ମନଦେଇ ଚିତ୍ତ । ଓଁକାରୁ ବେଦମାନେ ଜାତ ॥
ଓଁକାର ଅଛଇ ବେଦରେ । ବେଦଟି ବୋଲଏ ସୃଷ୍ଟିରେ ॥
ଶାହାସ୍ତ୍ରମାନେ ଦେହରୂପ । କହନ୍ତି ପ୍ରଣବ ସ୍ୱରୂପ ॥
ଏ ଯେତେ ଶାସ୍ତ୍ରମାନେ ଭଲ । ପ୍ରଣବ ଓଁକାରକୁ ବୋଲ ॥
ଗୁରୁର ବିନା ନରେ କେହି । ଓଁକାରତତ୍ତ୍ୱ ନ ମିଳଇ ॥
ଶବଦୁ ଶାସ୍ତ୍ର ପ୍ରବର୍ତ୍ତିଲେ । ଶବ୍ଦ ସର୍ବଭୂତେ ବହିଲେ ॥
ଏବଂ ଭୂତ ଯେଉଁ ଓଁକାର । ପ୍ରତ୍ୟକ୍ଷେ ବଚନ ବାହାର ॥
ବ୍ରହ୍ମାଦି ଶୁକ ସନକାଦି । ଏ ମହର୍ଷି ବେଦବାଦି ॥
ସମସ୍ତେ ପୁରାଣର ବେଦ । କରି ଭ୍ରମୁଛନ୍ତି ପ୍ରବନ୍ଧ ॥
ଭିନ୍ନଭିନ୍ନ ବେଦ ଶାହାସ୍ତ୍ର । ସମସ୍ତେ କରନ୍ତି ପ୍ରକାଶ ॥
ତେଣୁ ବେଦ ପୁରାଣ ଭନ୍ତି । ଭ୍ରମିଣ ଗମି ନ ପାରନ୍ତି ॥
ଶୁଣ ହେ ମନ ଶୁଦ୍ଧଚିତା । ପ୍ରଣବର ଯେ ସ୍ୱରମାତ୍ରା ॥
ସ୍ୱରମାତ୍ରା ପରେ ଓଁକାର । ତହିଁରୁ ହୋଇଛି ଶରୀର ॥

ଓଁକାର ଯେଉଁଠାରେ ନାହିଁ । ସେ ମୃତ୍ୟୁ ପିଣ୍ଡଟି ବୋଲାଇ ॥
ଓଁକାର ସଂଭୂତେ ବ୍ୟାପି । ଏମନ୍ତେ ବ୍ରହ୍ମାଣ୍ଡେ ନିକ୍ଷେପି ॥
ଅକାର ଉକାର ମକାର । ତିନି ମାତ୍ରାରେ ଏ ଓଙ୍କାର ॥
ଏ ତିନି ମାତ୍ରାର ଉପରେ । ବିନ୍ଦୁ ଯେ ସ୍ଥିତ ବଳଗରେ ॥
ଏ ତିନି ବ୍ରହ୍ମାଣ୍ଡ ଧରଛି । ବିନ୍ଦୁ ଯେ ବଇଠି ହୋଇଛି ॥
ଏମନ୍ତେ ଚତୁର୍ଦ୍ଧା ପ୍ରଣବ । ପରମାତ୍ମା କରୁଛି ଜୀବ ॥
ସେ ବିନ୍ଦୁ ଓଁକାରେ ପ୍ରବେଶି । ଶୁଣ ତା ଅର୍ଥ କହୁଅଛି ॥
ଓଁକାର କରତା ଗୋଚର । ଏମନ୍ତେ ପଞ୍ଚମାତ୍ରା ସାର ॥
ବିନ୍ଦୁ ସଂଯୁକ୍ତ ଯେ ଓଁକାର । ଶବଦ ମେଶି ଶତାକ୍ଷର । ୧୧୦ ।
ଓଁକାରେ ଜ୍ୟୋତିରଙ୍କ ହୋଇ । ସପ୍ତ ଆବରଣ ବୋଲାଇ ॥
ଜ୍ୟୋତିର ଉପରେ ପରମ । ଅଷ୍ଟାଙ୍ଗ ଯୋଗର ଏ ମର୍ମ ॥
ଅକାର ଉକାର ମକାର । ଅର୍ଦ୍ଧମାତ୍ରା ବିନ୍ଦୁ ଧାଡର ॥
ଜ୍ୟୋତି ପରମଙ୍କୁ ମିଶାଇ । ଆଠ ପ୍ରଣବ ଜାଣ ତୁହି ॥
ମନ ପକ୍ଷ ଅନୁଭବରେ । ନବଧା ଭକ୍ତି ବୁଝେ କଲେ ॥
ଏହି ନବଧାଭକ୍ତି ପରେ । ଏଥିରେ ମନଟି ବନ୍ଧରେ ॥
ଏ ମନ ନବଧାର ହୋଇ । ନବଦ୍ୱାରେ ଯାଉଛି ବହି ॥
ଶିଶୁମ୍ନା ଅଙ୍କ ଯେ ମିଶି । ଦଶ ଇନ୍ଦ୍ର ତହିଁ ପ୍ରକାଶି ॥
ମନ ଯେ ଏଥିରେ ମିଟିଲେ । ଏକାଦଶ ଇନ୍ଦ୍ର ହୋଇଲେ ॥
ମନ ବୁଦ୍ଧିକୁ ଯେ ସ୍ମରଣ । ଏ ଶାସ୍ତ୍ର ବେଦ ଯେ ପୁରାଣ ॥
ଏ ଦଶଦ୍ୱାରେ ମନ ବନ୍ଧ । ନୋହିବାରୁ ନ ହୁଏ ଭେଦ ॥
ଏ ଏକାଦଶ ଇନ୍ଦ୍ର ଗତ । ତା ପରେ ପରମାତ୍ମା ସ୍ଥିତ ॥
ଏ ପରକାରରେ ଯେ ତହିଁ । ଦ୍ୱାଦଶ ଆତ୍ମା ସବୁଠାଇ ॥
ସ୍ୱୟମ୍ଭୁ ସମ୍ଭୂତ ଅଟନ୍ତି । ହରେଣେ ହର ବୋଲବନ୍ତି ॥
ଏ ଆତ୍ମା ବ୍ରହ୍ମର ମରମ । ବେଦ ଶାସ୍ତ୍ରେ ନ ଜାଣିମ ॥
ତ୍ରିମାତ୍ରା ତ୍ରିଗୁଣ ତ୍ରିବୀଜ । ତ୍ରିଧାମ ତ୍ରିବର୍ଣ୍ଣ ରୁ ବୁଝ ॥
ପାତାଳ ମର୍ତ୍ତ୍ୟ ସ୍ୱର୍ଗପୁର । ଏ ତିନି ଲୋକର ଉପର ॥

ତାପରେ ଗୋଲକ ବନ୍ଦୁହିଁ । ଓଁକାର ନିତ୍ୟସ୍ଥଳ ସେହି ॥
ସେଠାରେ ଓଁକାର କ୍ରୀଡ଼ଇ । ସେ କ୍ରୀଡ଼ା କେତେବେଳେ ନୋହି ॥
ରଜନୀ ଦିବସେ ସନ୍ଧ୍ୟାଏ । ନିତ୍ୟରେ ବିଜେ ରାମ କୃଷ୍ଣ ॥
ଶ୍ରୀକୃଷ୍ଣ ବାମ ଜାନୁରେହିଁ । ଶ୍ରୀମତୀ ଶୋଭି ଯେ ଅଛଇ ॥
ଓଁକାରପରେ ବସିଥିବ । ଶ୍ରୀ ପଦ୍ମାସନେ ଯେଳିଗିବ ॥
ଶ୍ରୀମୁଖେ ମୁଖକୁ ଲଗାଇ । ଅଧର ମଧୁକୁ ଚୁମ୍ବଇ ॥
ସ୍ୱପ୍ରେମେ ବୁଡ଼ାବୁଡ଼ି ହୋଇ । ଚୁମ୍ବନ ହୋନ୍ତି ଦିଅ ଦେଇ ॥
ଯେସନେ ଅଳି ପଦ୍ମବନେ । କରଇ ମକରନ୍ଦ ପାନେ ॥
ଶ୍ରୀମତୀ ଶ୍ରୀମୁଖ ପଦ୍ମକୁ । ସେପରି ଲାଗେ ଶ୍ରୀକୃଷ୍ଣକୁ ॥
ଦ୍ୱିସ ଦ୍ୱସରେ ସୁଧା ପିଇ । ବେନି କୁଚକୁମ୍ଭ ଢାଳଇ ॥
ବୋଲନ୍ତି ଚରଣ ଧୂଳି । ଅହୋ କି ଶୀତଳ ଯେ ବୋଲି ॥
ଅଧରେ ଅଧର ମିଶାଇ । ଭବେ ତାମ୍ବୂଳ ଖିଅଖୋଇ ॥
କାନପଣ୍ତରେ ଯୋଛିଲେ । ଶ୍ରୀମୁଖ ଝୋଳ ବାହାରିଲେ ॥
ଏକେ ଭାବରେ ଭିନ୍ତି ଅଛି । ତିଳେହେଁ ନାହିଁ ଭିନ୍ନାଭିନ୍ନ ॥
ବେନି ଗୋଟିଙ୍କ କାୟା ଏହି । ବଡ଼ବ ମାତ୍ରଏକ ଥାଇ ॥
ଏମନ୍ତେ ନିତ୍ୟେ ଲୀଳାକର । ଗୁପତ ବୃନ୍ଦାବନେ ହରି ॥
ଘନଘନ ବଂଶୀ ବଜାନ୍ତି । କଦମ୍ବମୂଳେ ବିହରନ୍ତି ॥
ଚଉପାଶରେ ବ୍ରଜବାଳୀ । ବେଢ଼ିଛନ୍ତି କରି ମଣ୍ଡଳୀ ॥
ଯେ ଯାହା ସେବାରେ ଥାନ୍ତି । ତିଳେହେଁ ଅନ୍ତର ନୁହନ୍ତି ॥
କେ ଗୂଳେ ଅଳକ ଭ୍ରମର । କେ ଗୋଳେ ଚନ୍ଦନ କର୍ପୂର ॥
ଶ୍ରୀରାଧା ଶ୍ରୀକୃଷ୍ଣ ଅଙ୍ଗରେ । ବୋଳନ୍ତି ଅତି ସ୍ୱପ୍ରେମରେ ॥
କେ ଅବା ଭୁଞ୍ଜାନ୍ତି ବିଡ଼ିଆ । କେହୁ ମର୍ଦ୍ଦଳ ଧରି ଚିଆ ॥
କେହୁ ତାଳ ଖୋଳ ବଜାଇ । କେ ଯନ୍ତ୍ର ବୀଣା କରେ ଲଇ ॥
କେହୁ ତାନମାନ ଉକୁଟି । କରଇ ତାର ନାନାଷ୍ଟ ॥
ତାଦ୍ରିମି ତାଦ୍ରିମି ତାଦ୍ରିମି । ତାଖିଣ୍ଟା ତାକ ଧିନାଧିନ ॥
ପ୍ରେମ ରସରେ ଉନ୍ମାଦିନୀ । ନାଚନ୍ତି ନିତ୍ୟରେ କାମିନୀ ॥

ମଙ୍ଗଳ ଗୁଲ୍ଭର ସ୍ୱରରେ । ଓଁକାର ଗାବନ୍ତି ସ୍ୱରରେ ॥
ହସ୍ତକ କରି ନେତ୍ର ଠାରି । ସଙ୍ଗୀତ ରସରେ ପୂରରି ॥
କଟିରେ କିଙ୍କିଣି ବାଜେଣି । ଝୁମୁଝୁମୁ ରେ ପୂର ତାନ ॥
ଶବଦେ ଗଦଗଦ କରେ । ଖଞ୍ଜରି ମର୍ଦ୍ଦଳ ବାଦ୍ୟରେ ॥
ଅନର୍ନିଶି ଧ୍ୱନି ଗର୍ଜଇ । ମୂର୍ଚ୍ଛନା ମଧ୍ୟେ ବାହାରଇ ॥
ଦୁନ୍ଦୁଭି ବାଦ୍ୟ ପ୍ରାପ୍ତ ସ୍ୱନ । ଆକାଶେ ଥାଇ ଦେବଗଣ ॥
କରନ୍ତି କୁସୁମ ଯେ ବୃଷ୍ଟି । ଶ୍ରୀରାଧା କୃଷ୍ଣ ରାସ ଦେଖି ।୧୬୦
ଷଡ଼ୃତୁ ଯେଣ ବସନ୍ତ । ବହୁଛି ତରୁ ପଲ୍ଲବତ ॥
କଳ୍ପତରୁ ସମ ଦିଶଇ । ସୁରସ ଫଳ ପୁଷ୍ପ ଶୋଭ ॥
ମନ୍ଦ ଗନ୍ଧରେ ଯେ ସମୀର । ବହୁଛି ସେ ବନଭିତର ॥
ମଧୁପାନରେ ମଧୁବ୍ରତ । ନାନା ପୁଷ୍ପରେ ହୋଇ ରତ ॥
ଶୁକ ପିକ ସାରି କପୋତ । ଝିଙ୍କାରି ଧ୍ୱନି ଶୁଭେ ନିତ୍ୟ ॥
ରାହାସ ନିତ୍ୟ ବୃନ୍ଦାବନେ । ଦେଖନ୍ତି ପୁଷ୍ପିତ କାନନେ ॥
ଶୁଷ୍କ ତରୁମାନେ ପଲ୍ଲବ । ନିର୍ଜୀବ ହୋଇଯାନ୍ତି ଜୀବ ॥
ସଜୀବମାନେ ଯେ ନିର୍ଜୀବ । ଦେଖି ନିତ୍ୟସ୍ଥଳର ଭାବ ॥
ବ୍ୟାଘ୍ର ପଛେ କୁରଙ୍ଗୀ ଯାଇ । ସିଂହ ପଛେ ଗଜ ଗୋଡ଼ାଇ ॥
ଦେହ ପ୍ରତିମା ପର ହୋଇ । ଶତ୍ରୁ ମିତ୍ର ଯେ ଏକ ହୋଇ ।୧୭୦
ଅହଂଭାବନ ସବୁଙ୍କର । କ୍ଷୁଧା ତୃଷା ନାହିଁ କାହାର ॥
କୈବଲ୍ୟ ସର୍ବେ ଭୁଞ୍ଜୁଛନ୍ତି । ନାହିଁ ଯେ ଜାତିକି ଅଜାତ ॥
ଶ୍ରୀରାଧା କୃଷ୍ଣ ଅଙ୍ଗ ଜ୍ୟୋତି । ଜଳୁଛି ନାହିଁ ଦିବା ରାତି ॥
ମୁକତି ପଦର ଭଣ୍ଡାର । ଗୋଲକଧାମ ଯେ ନାମ ତାର ॥
ତାହାର ମଧ୍ୟେ ବୃକ୍ଷେ ଥାଇ । କଳପ ବଟ ସେ ବୋଲାଇ ॥
ବଟର ମୂଳେ ନନ୍ଦ ବସି । ବଜାର ବାନ୍ଧି ଦେଇଅଛି ॥
ଯେ ଯାହା ଭକ୍ତିଧନ ଦେଇ । କିଣିବ ଯାଚି ଦିଏ ସେହି ॥
ଏ ଧର୍ମ ଅର୍ଥ କାମ ମୋକ୍ଷ । ସତ ଶାସ୍ତ୍ର ଯେ ଜପ ତପ ॥
ସାଧୁ ସନ୍ଥ ଭକ୍ତ ସୁଜନ । ମହତ୍ତ୍ୱ ଅଦ୍ଧ ବୃନ୍ଦଜନ ॥

ଶତଧନ ଦେଇଣ ସେହି । ଟିକା କିଣା କରନ୍ତି ବନ୍ଧ ।୧୮୦।
ଏପରି ନିତ୍ୟସ୍ଥଳ ବାସ । ହେଉଅଛି ପୂର୍ଣ୍ଣ ବିଳାସ ॥
ଗୁପତ ଲୀଳାକୁ ପ୍ରକଟ । କରିଣ ଲେଖିଲି ମୁଁ ଝାଟ ॥
ହେ ମୁକ୍ତଜନେ ମୋର ଦୋଷ । ନ ଧର ମୁଁ ତୁମ୍ଭର ଦାସ ॥
ତୁମ୍ଭରସଙ୍ଗେ ମୋତେ ନିଅ । ନିତ୍ୟସ୍ଥଳକୁ ଚାଲିଯାଅ ॥
ଶ୍ରୀରାଧା କୃଷ୍ଣ ଭଜ ନାମ । ହୃଦରେ କରି ନିତ୍ୟେ ଧ୍ୟାନ ॥
ସାଧୁଙ୍କ ସଙ୍ଗତରେ ବସ । ଦେଖିବ ସେ ନିତ୍ୟ ବିଳାସ ॥
ତାହାଙ୍କ ଚରଣର ଧୂଳି । ବୋଳିହେବ ପାପ ପଖାଳି ॥
ବାଟ କଢ଼ା ଲୋକ ଅଛଇ । ବଣା ହେ ଆଉ ହେବନାହିଁ ॥
ନାହିଁ ନ କରିବା ମୋ ବୋଲ । ମୁଁ ତୁମ୍ଭ ସଙ୍ଗେ ଯିବି ଚାଲ ।
ପାଦପଦ୍ମତଳେ ପଡ଼ିବା । ଅହର୍ନିଶିରେ କର ସେବା ।୧୯୦।
ଭକ୍ତଙ୍କୁ ନେବାକୁ ଯେ ତହିଁ । ପୁଷ୍ପକ ବିମାନ ଆସଇ ॥
ସଙ୍ଗତେ ବିଷ୍ଣୁଦୂତେ ଛନ୍ତି । ବିମାନେ ବସି ଡ଼ାକୁଛନ୍ତି ॥
ନାମରେ ଯାହାର ବିଶ୍ୱାସ । ବିମାନ ହୋଏ ତାକୁ ଦୃଶ୍ୟ ॥
ବିଶ୍ୱାସ ନ ଥିଲେ ଯେ ତହିଁ । କେବେ ସେ ପଥ ନ ମିଳଇ ॥
ଅଦୃଶ୍ୟ ଦୃଶ୍ୟ କରିପାରୁ । ସେହିଣ ଥିଲେ ସଦଗୁରୁ ॥
ସେ ସଦଗୁରୁ ସିନା ଏକା । ଏ ମୂଢ଼ ଜୀବର ସେ ସଖା ॥
ସେ କଳ୍ପତରୁ ଏ ସଂସାରେ । ଯେ ସଦବାଟ ଦେଇପାରେ ॥
ନାମ ଦେଇଣ କରେ ପାର । କଳ୍ପାନ୍ତେ କଳ୍ପ ଅଧିକାର ॥
ଆହେ ସୁଜନେ ଗୁରୁ ସେବ । ଜୀବର ସଦମାର୍ଗ ଭାବ ॥
କହେ ବିପ୍ର ମଦନ ଦାସ । ଶ୍ରୀମନ୍ତ ଚରଣ ସାରସ ॥
ତୃତୀୟ ଅଧ୍ୟାୟର ବାଣୀ । ଭାଷା ପ୍ରବନ୍ଧେ ମୁଁ ବଖାଣି ॥
ସୁଜନେ ଦୋଷ ମୋ ନ ଧର । ନିଗମ ଗୀତା ଭକ୍ତିସାର ॥
ଦୁଇଶ ଚଉପଦେ ପୂର୍ଣ୍ଣ । ବୁଝ ହୋ ନରେ ଦେଇ କର୍ଣ୍ଣ ॥

ଇତି ଶ୍ରୀ ନିଗମଗୀତା ଯୋଗଶାସ୍ତ୍ରେ ମନଚୈତନ୍ୟସମ୍ବାଦେ ଓଁକାର ପୂର୍ବନିର୍ଣ୍ଣୟ କଥନେ ମଦନଦାସ ବିରଚିତେ ନାମ ତୃତୀୟୋଽଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

ମହାବ୍ରହ୍ମସ୍ୟ ଓଁକାରଙ୍କରତ ତ୍ରିଗୁଣାଃଜାତ ।
ସତ ରଜ ତମ ଚେତ ବ୍ରହ୍ମା ବିଷ୍ଣୁ ମହେଶ୍ୱରଃ ॥

## ଚୈତନ୍ୟ ଉବାଚ ।

ମନକୁ ଚୈତନ୍ୟ କହନ୍ତି । ପାର୍ବତୀ ଅଗ୍ରେ ପଶୁପତି ॥
ବସୁଦେବ ଅଗ୍ରେ ନାରଦ । ଉଦ୍ଧବ ମାଧବ ସମ୍ବାଦ ॥
ଯଦୁରାଜାକୁ ଅବଧୂତ । ଶୁକ କହନ୍ତି ପରୀକ୍ଷିତ ॥
ନିମି ରାଜାକୁ ନବଯୋଗ । କହନ୍ତି ବ୍ରହ୍ମଜ୍ଞାନ ବାଣୀ ॥
ଶୁଣ ହେ ମନ ସାବଧାନ । ଯେଉଁଠାରୁ ଓଁକାର ବ୍ରହ୍ମ ॥
ଆଦ୍ୟ ପ୍ରାନ୍ତ କର ବୁଝାଇ । କହୁଛି ଶୁଣ ନରସାଇଁ ॥
ଯେ ଜ୍ଞାନ ଭୃଷଣ୍ଡ ପାଇଛି । ଅମର ହୋଇ ବସିଅଛି ॥
ବ୍ରହ୍ମାଶିବ ବିଷ୍ଣୁ ସହିତେ । ଅଛନ୍ତି ଯାହାର ଆଶ୍ରିତେ ॥
ସେ ମହା ବ୍ରହ୍ମରୁ ଓଁକାର । ଓଁକାରୁ ତ୍ରିଗୁଣ ଅକ୍ଷର ॥
ତ୍ରିଗୁଣ ବୋଲନ୍ତି ଯାହାକୁ । କହି ସତ ରଜ ତମକୁ ॥
ସେ ବ୍ରହ୍ମାବିଷ୍ଣୁ ଶିବ ଜାଣ । ବ୍ରହ୍ମାଅଟଇ ରଜଗୁଣ ॥
ବିଷ୍ଣୁ ଜାତ ସତ୍ତ୍ୱ ଗୁଣର । ତମ ଗୁଣରୁ ମହେଶ୍ୱର ॥
ଏ ତ୍ରିମାତ୍ରାର ତ୍ରିଲକ୍ଷଣ । କହିବା ଶୁଣ ହେ ସଜ୍ଜନ ॥
ଅକାର ମାତ୍ରା ବ୍ରହ୍ମ କହି । ରଜଗୁଣରୁ ଜାତ ସେହି ॥
ଉକାର ମାତ୍ରା ବିଷ୍ଣୁ କହି । ସତ୍ତ୍ୱଗୁଣ ସେହୁ ଅଟଇ ॥
ମକାର ମାତ୍ରା ଅଟେ ଶିବ । ତମ ଗୁଣରୁ ସେ ଉଦ୍ଭବ ॥
ଏ ତିନ୍ନି ପରେ ବିନ୍ଦୁ ଅଛି । ନାଦ ଶବଦ ବୋଲାଇଛି ॥
ନାଦବିନ୍ଦୁ ବୋଲିଣ ଏକ । କହିଛନ୍ତି ସାଧୁ ବିବେକ ॥
ସେ ନାଦ ବିନ୍ଦୁଟି ଜଗତ । ତହୁଁ ହୋଇଲା ତିନିଲୋକ ॥
ଏ ଦେହ ପ୍ରଣବ ଅଟଇ । ତ୍ରିବିଧ ହୋଇଣ ଅଛଇ ॥ ୧୦

କଣ୍ଠୀଠାରୁ ଯେ ପାଦଯାଏ । ପାତାଳ ପୁର ବୋଲି କହେ ॥
ସେ ପୁର ବ୍ରହ୍ମାଙ୍କର ସ୍ଥାନ । ଅକାର ମାତ୍ରା ସେ ପ୍ରଧାନ ॥
ପ୍ରଣବ କଣ୍ଠଠାରୁ ତହିଁ । କଣ୍ଠଯାଏ ମର୍ତ୍ତ୍ୟ ପୁରହିଁ ॥
ମର୍ତ୍ତ୍ୟପୁର ଯେ ବିଷ୍ଣୁ ଧାମ । ଉକାର ମାତ୍ରା ସେ ପ୍ରଧାନ ॥
କଣ୍ଠଠାରୁ ଲଲାଟ ଯେତେ । ସ୍ୱର୍ଗମଣ୍ଡଳ ବୋଲି ସେତେ ॥
ମକାର ମାତ୍ରାଟି ଈଶ୍ୱର । ଈଜସ୍ଥ ଲଲାଟ ଚକର ॥
ଏ ଅର୍ଦ୍ଧ ମାତ୍ରା ଅର୍ଦ୍ଧପୁର । ଅର୍ଦ୍ଧଦେବୀ ଛନ୍ତି ତହିଁର ॥
ଏ ଖେଳା ମେଳା ହୋଇଅଛି । ଏ ସୂକ୍ଷ୍ମ ଗୁଣ ବୋଲାଉଛି ॥
ଏ ଅର୍ଦ୍ଧ ମାତ୍ରାର ଉପର । ବିନ୍ଦୁ ଅଛି ଶୁଣ ସେ ପୁର ॥
ଭ୍ରୂଲତାଠାରୁ ଯେ ଊର୍ଦ୍ଧ୍ୱକୁ । ଗୋଲୋକ ପୁର ବୋଲି ତାକୁ ॥
ଗୋଲୋକ ଅର୍ଦ୍ଧ ମାତ୍ରା ଏହି । ଚତୁର୍ଦ୍ଧା ପ୍ରଣବ ବୋଲାଇ ॥
ପ୍ରଣବ ପୂର୍ବେ ମାତ୍ରା ଘୂର । ବ୍ରହ୍ମାଣ୍ଡ ଧାରଣକୁ କର ॥
ଏ ପ୍ରଣବ ସୂକ୍ଷ୍ମ ଗୁଣରେ । ଓଁକାର ଏଥିକି ଡାକରେ ॥
ଓଁକାର ସୂକ୍ଷ୍ମ ଚକ୍ଷୁ ମନ । ସେ ସ୍ଥାନ ଗୋଲୋକ ଭୁବନ ॥
ଏହି ଚନ୍ଦ୍ରପୁର ଉପର । ନିତ୍ୟ ଗୋଲୋକର ବିହାର ॥
ତହିଁ ଉପରେ ପୁର ନାହିଁ । ବେଦରେ ଏମନ୍ତ ଅଛଇ ॥
ପାତାଳଠାରୁ ଗୋଲୋକହିଁ । ଶାସ୍ତ୍ରରେ ଅଛଇ ଚହ୍ନାଇଁ ॥
ପାତାଳ ମର୍ତ୍ତ୍ୟ ସ୍ୱର୍ଗପୁର । ଗୋଲୋକ ଗୃହ ପ୍ରଣବର ॥
ପ୍ରଣବ ବାର୍ତ୍ତା ଆଦିଅନ୍ତ । ପୁରାଣେ ଲହିଛନ୍ତି ସନ୍ଥ ॥
ବେଦ ପୁରାଣାଦି ଶାସ୍ତ୍ର । ପ୍ରଣବୁ ହୋଇଲେ ପ୍ରକାଶ । ୪୦ ।
ଈଶ୍ୱର ଉତ୍ପତ୍ତି ଯେ ସ୍ଥିତି । ପ୍ରଳୟ ଶାସ୍ତ୍ରେନ ଜାଣନ୍ତି ॥
ସେ ଗୋଲୋକ ପୁର ଓଁକାର । ମହିମା ବନ୍ଦନୀୟ ତାର ॥
ବେଦ ଯେ ନ ପାଇଲେ ଲେଶ । ଖୋଜି ଖୋଜିଣ ଏ ଶାସ୍ତ୍ର ॥
ତ୍ରିବେଦ ତ୍ରିମାତ୍ରା ତ୍ରିଗୁଣ । ପ୍ରଣବ ଅକାର ଘଟଣ ॥
ତ୍ରିମାତ୍ରା ଉପରେ ବିନ୍ଦୁର । ସେ ଅଟେ ଏ ଗୋଲୋକ ପୁର ॥
ଏ ଗୃହପୁରେ ଗୃହବେଦ । ସାମ ଯଜୁ ଋକ ଅଥର୍ବ ॥

ଏ ଗୃହଦ୍ୱାରେ ଜଗିଛନ୍ତି । ଓଁକାର ପଞ୍ଚମ ବେଦାନ୍ତ ॥
ଏ ପଞ୍ଚ ବେଦର ଯେ ବିଧି । ନିତ୍ୟ କରଣଛନ୍ତି ସିଦ୍ଧି ॥
ଏ ପଞ୍ଚ ମହାଭୂତ ହୋଇ । ଅକାର ମାତ୍ରା ଶୁଣ ତୁହି ॥
ଅକାର ମାତ୍ରା ଯଜୁର୍ବେଦ । ଉକାର ମାତ୍ରା ସାମବେଦ ॥
ମକାର ଋକବେଦ ଜାଣ । ଅଥର୍ବ ବିନ୍ଦୁର ପ୍ରମାଣ ॥
ଏହିଟି ପ୍ରଣବର ବେଦ । କହିଲି ଶାସ୍ତ୍ରାର୍ଥ ବାଦ ॥
ସେ ବିନ୍ଦୁ ମାତ୍ରାର ଓଁକାର । ସଂଯୁକ୍ତ ଶିଶୁବେଦ ସାର ॥
ଯେହୁ ଓଁକାର ସେ ପ୍ରଣବ । କହିଲି ଶୁଣ ତହିଁ ଭାବ ॥
ସେହି ଓଁକାରୁ ଶବ୍ଦ ଜାତ । ନାଦ ହେଉଛି ଅବିରତ ॥
ସେ ଶବ୍ଦ ଯହିଁରୁ ଝରଇ । ଓଁକାର ବୋଲି ତାକୁ କହି ॥
ଓଁକାରୁ ବ୍ରହ୍ମାଣ୍ଡ ପ୍ରକାଶ । ଶବ୍ଦରୁ ହୋଇଛି ଆକାଶ ॥
ପୁରାଣ ସମସ୍ତେ କହନ୍ତି । ଏହାକୁ ବେଦ ବୋଲୁଛନ୍ତି ॥
ଓଁକାର ପରମ ସୁନ୍ଦର । ହେଉଛି ପରମ ଓଁକାର ॥
ଓଁକାରକୁ ଧର ପରମ । ସୁନ୍ଦରେ କରଛି ବିଶ୍ରାମ । ୬୦ ।
ଜ୍ୟୋତିବନ୍ଧରେ ରହିଅଛି । ସେ ପୂର୍ଣ୍ଣବ୍ରହ୍ମ ଯେ ଶ୍ରୀବତ୍ସ ॥
ରୂପ ନୟନେ ଖେଳୁଅଛି । ସେ ଏକା ସଭାରେ ବହୁଛି ॥
ଅଜନ୍ମା ନାମଟି ତାହାର । ମୃତ୍ୟୁ ଅମୃତ୍ୟୁ ନାହିଁ ତାର ॥
ଏମନ୍ତ ପରଂବ୍ରହ୍ମ ଯେହୁ । ଶାସ୍ତ୍ରକୁ ଗୋଚର ଯେ ନାହିଁ ॥
ଗୁରୁ ମୁଖ ବିହୀନେ ଜନ । ଚକ୍ଷୁଥାଉଁ ଅନ୍ଧ ସମାନ ॥
ସେଥି ପକ୍ଷିପ୍ରାୟ ମାୟାରେ । ଏ ଶୋଟେ ପଞ୍ଚେଦିନ ନେଲେ ॥
ଏ ମାୟା ଅନ୍ଧକାର କୂପ । ପଡ଼ି ଭୁଞ୍ଜନ୍ତି ପ୍ରାଣୀ ପାପ ॥
ରୌରବ କୁଣ୍ଡକୁ ଯେ ତହିଁ । ସୌଭାଗ୍ୟ ବୋଲି ପଡ଼ି ଥାଇ ॥
ଆଶ୍ରୟ ଶ୍ରୀଗୁରୁ ଚରଣ । ନ କର ବିଅର୍ଥରେ ଧନ ॥
ନେଉଛି ମାୟାରେ ପଡ଼ଣ । ଦାସମୂତ ମୋର ବୋଲଣ । ୭୦ ।
ଗୁରୁରୂପ ପାଦରେ ଭକ୍ତି । ନ କର ବିଅର୍ଥରେ ଶାସ୍ତି ॥
ପାଉଛି କଷ୍ଟ ଏ ଘଟଣ । ଦୁର୍ଲ୍ଲଭ ମନୁଷ୍ୟ ଜନମ ॥

ମୁକ୍ତି ନାବ ଏ ଅଟଇ । ଭବ ସିନ୍ଧୁକୁ ନ ତରଇ ॥
ଏମନ୍ତ ନାବ ପାଇଣ ଥାଇ । ଆଶ୍ରେ ଗୁରୁଙ୍କ ନ କରଇ ॥
ଶୁଣ ହୋ ମନ୍ ନୃପବର । ଘେନ ଯେ ବଚନ ମୋହର ॥
ଆଶ୍ରେ ଗୁରୁଙ୍କୁ କର ମନ । ଯାହାର ମହିମା ମହାନ ॥
ଯାହାର ନଖ କୋଣୁ ତହିଁ । ଯାଉଛି ନବଧାର ବହି ॥
ନବଧାଭକ୍ତି ଯା ହୃଦୟେ । ଆନନ୍ଦେ ସୁଧାଙ୍ଗର ପାଏ ॥
ଭକ୍ତି ତୁ କର ପଦ୍ମପାଦ । ରହିଣ ପିଅ ମକରନ୍ଦ ॥
ହରି ହରି ବାଣୀ ମୁଖରେ । ସ୍ଥିତବ ହୃଦୟ ଗନ୍ଧରେ । ୮୦ ।
ହରିର ନାମ କର ମାଳା । ଏ ଭବ ସାଗରକୁ ଭେଳା ॥
ହରି ହରି ଭଜନ କର । ତେବେ ମରଣ ମୁଖୁ ତର ॥
ଭଜିଲେ କାମନା ତୁଟିବ । ଯାତନା ପଥକୁ ନ ଯିବ ॥
ଏ ଦିବ୍ୟ ତନୁ ପାଇକରି । କପାଇଁ ପାସୋରୁଛୁ ହରି ॥
କାହିଁ ପାଇବୁ ଏତେ ସଜ । ବହିବାକୁ ନୁହଇଁ ବୋଝ ॥
ଅନିତ୍ୟ ସଂସାର ସାଗରେ । ଘାରୁଛି ବସ୍ତୁସ ମଦରେ ॥
ଏ ନଦ ମଧ୍ୟରେ ଯେ ଥାଇ । ଅଦ୍ୟ ପ୍ରାନ୍ତରେ ନ ରହଇ ॥
ଏ କଥା ନ ବୁଝ ନିର୍ଲଜ । ଜାଣିଲ ତୁହି ନଷ୍ଟେ ଅଜ ॥
ଯେବେ ବାତ ପିତ୍ତ ହୋଇବ । କଫ ଯେ ଥପି ଆକର୍ଷିବ ॥
ଅଚେତା ବ୍ୟାଧିର ପ୍ରବଳେ । କି ଶକ୍ତି ଥିବ ତେତେବେଳେ ॥
ବେଳ ଯେ ଥାଉଁ ଏବେ ପୁଣ । ଦେବାଧି ଦେବଙ୍କୁ ଶରଣ ॥
ନ ପଶୁ କହୁଅଛି ମୁହିଁ । ତୋ ସଙ୍ଗେ ନ ଯିବେଟି କେହି
ସର୍ବେ ବୋଲିବେ ମଲା ମଲା । କାହିଁ ତୁ ଛାଡ଼ିଗଲୁ ବଳା ॥
ମାତା ପିତା ତୋ କାନ୍ଦୁଥିବେ । ଅର୍ଜିଲା ଖାଉଦ ବୋଲିବେ ॥
ଘରର ଘରଣୀ ଯେ ତହିଁ । ଅନପତ ଲୋଡ଼ିବ ଯାଇଁ ॥
ପୁଅ ବୋଲିବ ସାନ୍ଧୁ ହେଲି । ଘରର ଆର୍ଦ୍ଧୋଳ ବୁଝିଲି ॥
ମଡ଼ା ବୋଲିଣ ତୋତେ କେହି । ନ ଛୁଇଁବେ କହିଲି ମୁହିଁ ॥
ଶ୍ମଶାନେ ପକାଇଣ ଦେବେ । ଶ୍ୱାନ ଶୃଗାଳ ଯେ ଭକ୍ଷିବେ ॥

ହାଡ଼ ମାଂସକୁ ଖେଞ୍ଚାଇ । ଦ୍ୱିଦଣ୍ଡେ କ୍ଳେଶ ଥିବନାହିଁ ॥
ନବଦଣ୍ଡ କ୍ରିୟା କରିବେ । ଦଶଦଣ୍ଡେ ରୂପ ପାଇବେ ॥
ଏଗାର ଦିନରେ ଆମିଷ । ଭୁଞ୍ଜିଣ ଛାଡ଼ିବେ ତୋ ଆଶ ।୧୦୧।
ବାର ଦିନରେ କ୍ରିୟା କର୍ମ । ବନ୍ଧୁ ବାନ୍ଧବ ତେରଦିନ ॥
ଯେଞ୍ଜା ଘରକୁ ଚଳିଯିବେ । କାଳେ ସେ ଅନ୍ତର ହୋଇବେ ॥
ତୋତେ ଯେ ଯମଦୂତ ନେବେ । ବାନ୍ଧଣ ବନ୍ଧ ଶାସ୍ତି ଦେବେ ॥
ବୋଲିବେ ଦରକିରେ ବାଇ । ତୁ ଏବେ ଦିବ୍ୟତନୁ ପାଇ ॥
କପାଁ ନ ଭଜ ରାଧାପତି । ପଡ଼ିଲୁ ଯମର ହାତି ॥
ଏତେ ବୋଲିଣ କ୍ରୋଧେ ତହିଁ । ଚର୍ମ ଦାଉଡ଼ି ଗଳେ ଦେଇ ॥
ଶିମୂଳ ବୃକ୍ଷରେ ବାନ୍ଧିବେ । ବହୁତ ମାଡ଼ ତହିଁ ଦେବେ ॥
ତପତ କୁଣ୍ଡରେ ଯେ ତହିଁ । ପକାଇ ଦଗଧିବେ ନେଇ ॥
ମଲି ମଲି ବୋଲିବୁ ତୁହି । ଧାନ୍ଦା ନୋହିବେ ତୋତେକେହି ॥
ତପତ ଅଙ୍ଗାର କୁଣ୍ଡରେ । ଭରିଣ ଦେବେ ସେ ନିର୍ଭରେ ॥
ବେନି ଚକ୍ଷୁକୁ ଦେବେ ଖୋଳି । ଶୁନ୍ୟ ଦ୍ୱାରେ ମାରିବେ ଶୂଳି ॥
ତପତ ଚକ୍ରଣ ଯେ ତହିଁ । ଟାଳିବେ ନାସା କର୍ଣ୍ଣେ ନେଇ ॥
ମାଂସ ଛିଳି ଛିଳି କରି । କାଟି ଲୁଣ ବେଣ୍ଟର ବୋଳି ॥
ଦନ୍ତପାଟି ତୋର ଭାଙ୍ଗିବେ । ଜିହ୍ୱାକୁ ଉପାଡ଼ଣ ଦେବେ ॥
ନାହିଁ ଯେ ବୋଲୁଥିଲେ ତୁହି । ଦ୍ୱିଗୁଣ ମାରିବେ ତୁହାଇ ॥
ଉପାଡ଼ ଦେଉଥିବେ ଦାଢ଼ି । ଅନଳେ ନସ ଦେବେ ପୋଡ଼ି ॥
ତୋ ଇନ୍ଦ୍ରି କାଟି ତୋ ମୁଖରେ । ଦେବେ ନିର୍ଦ୍ଦୟ ସ୍ୱଭାବରେ ॥
ବୋଲିବେ ଏ ମୂଢ଼ା ମୁଖରେ । ହରିଙ୍କି ନ ବୋଇଲୁ ଥରେ ॥
ଏମନ୍ତ ବୋଲି ତେତେ ନେବେ । ରଉରବରେ ପକାଇବେ ।୧୨୦।
ତୋ ଦେହେ କୃମି କୀଟ ମାନେ । ଚକଟି ଖାଇବେ ଯତନେ ॥
ଖୋରସେ ଶୋଣି ନ ରଖିବେ । ଏମନ୍ତେ ନିର୍ଦ୍ଦୟେ ମାରିବେ ॥
ଏ କଥା ବୁଝିକର ମନ । ଧଶ ଗୁରୁପାଦେ ଶରଣ ॥
ଏ ଜନ୍ମ ଦଣ୍ଡରୁ ଉଦ୍ଧାର । ମାତୃଗର୍ଭେ ହେବୁକୁ ଧର ॥

ମାତୃଗର୍ଭେ ଯେ ନାମାମୃତ । ପାଇ ହୋଇଥିଲୁ ବଞ୍ଚିତ ॥
ସେହି ନାମକୁ ଆଶ୍ରେ କର । କୃପା ହେବ ସଦଗୁରୁର ॥
ନିଜ ନାମ ଦେବେ ଚିହ୍ନାଇ । ପୂର୍ବର ହେରୁକୁ ଚେତାଇ ॥
ନାମକୁ ଦେଖି ଭ୍ରମ ଯିବ । ଏ ଯମଦଣ୍ଡ ଯେ ଛାଡ଼ିବ ॥
ନାମର ବ୍ରହ୍ମରୂପ ଦେଖ । ଘୋଟିଛି ସଂସାର ତ୍ରୈଲୋକ୍ୟ ॥
ନାମ ପ୍ରଣବର ଆକାର । ନାମଟି ହେଉ ଯେ ଓଁକାର ॥
ସେହି ଓଁକାର ଏକାକ୍ଷର । ବ୍ୟାପିଛି ଏ ସଚରାଚର ॥
ଏ ନାମ ପ୍ରଣବ ଯେ ତହିଁ । ସପ୍ତଭାଗ ହୋଇ ଅଛଇ ॥
ସପତ ବ୍ୟାହୃତ ହୋଇଛି । ଯେଉଁ ରୂପରେ ପ୍ରବର୍ତ୍ତିଛି ॥
ତାହା କହୁଛି ଶୁଣ ମନ । ଏକାଗ୍ର ଚିତ୍ତ ଯେ ହୋଇଣ ॥
ଏ ନାମ ପ୍ରଣବ ଯେ ତହିଁ । ସପ୍ତ ପ୍ରଣବ ଧରିଥାଇ ॥
ଏ ନାମ ପ୍ରଣବ ହୃଦର । ସପତ ବ୍ୟାହୃତି ତହିଁର ॥
ତେଣୁ ସିନା ସପ୍ତ ବ୍ୟାହୃତ । ସପତ ପ୍ରଣବ ଉତ୍ପତ୍ତି ॥
ସପତ ଲୋକ ଏହି ଜାଣ । ସପତ ସାଗର ପ୍ରମାଣ ॥
ସପତ ଧାତୁ ହୋଇଅଛି । ଶୁଣ ସଂକ୍ଷେପି ମୁଁ କହୁଛି ॥
ମୂଳ ପିଣ୍ଡ ଯେ ମୂଳାଧାର । ଅଟଇ ସେ ମୂଳଚକ୍ର ॥
ମୂଳ ଚକ୍ରରୁ ଲଲାଟ । ବ୍ରହ୍ମାଣ୍ଡ ପ୍ରଣବ ପ୍ରକଟ ॥
ଏଥି ମଧ୍ୟରେ ସପ୍ତଲୋକ । ଅଛନ୍ତି ଶୁଣ ମନ ନୃପ ॥
ମୂଳ ପିଣ୍ଡଠାରୁ ଯେ ତଳ । ଅଛଇ ସପତ ପାତାଳ ॥
ମୂଳ ଚକ୍ରରୁ ଊର୍ଦ୍ଧ୍ୱର । ଅଛଇ ଦ୍ୱାଦଶ ଅକ୍ଷର ॥
ବର୍ଣ୍ଣ ଭେଦରେ ଏ ଦ୍ୱାଦଶ । ଏ ସପ୍ତ ବ୍ୟାହୃତି ପ୍ରକାଶ ॥
ସପ୍ତ ଲୋକ ଦ୍ୱାଦଶ ଘର । ପଣ୍ଡିତେ ବୁଝ ପ୍ରତ୍ୟକ୍ଷର ॥
ମନକୁ ସଂଶୟ ହୋଇଲେ । ଦେଖ ଗାୟତ୍ରି ହୃଦୟରେ ॥
ସପତ ପ୍ରଣବ ସପତ । ଯେମନ୍ତେ ହୋଇଛି ପ୍ରବର୍ତ୍ତ ॥
ପ୍ରଥମେ ହୋଇଲା ଭୂର୍ଲୋକ । ତହୁଁ ହୋଇଲା ଭୁବର୍ଲୋକ ॥
ତଥି ଉପରେ ସ୍ୱର୍ଗଲୋକ । ତହୁଁ ଯେ ହେଲେ ମହର୍ଲୋକ ॥

ତହୁଁ ଜନଲୋକ ହୋଇଲେ । ଊର୍ଦ୍ଧ୍ୱେ ଯେ ତପଲୋକ ହେଲେ ॥
ସତ୍ୟଲୋକ ସ୍ଥିତ ତା ପରେ । ତା ପରେ ଗୋଲୋକ ମଣ୍ଡଳେ ॥
ତହୁଁ ଊର୍ଦ୍ଧ୍ୱକୁ ଯେଉଁମାନେ । ବନ୍ଦିଲେ ଓଁକାରର ସ୍ଥାନେ ॥
ଯେଉଁ ଓଁକାରକୁ ଯୋଗୀଏ । ବନ୍ଦିଲେ ଯୋଗଧ୍ୟାନ ଲୟେ ॥
ସେହି ଓଁକାର ଗୋଲୋକରେ । ବିହାର କରୁଛି ସଂସାରେ ॥
ଓଁକାରପରେ ନିତ୍ୟଭୂମି । ଅଛି ଅଭେଦ ନୋହେ ଗମି ॥
ଜ୍ଞାନ ଧ୍ୟାନଏ ନ ପାଇଲେ । ବେଦ ଶାସ୍ତ୍ରେ ଭ୍ରମି ମଲେ ॥
ସ୍ଥିତି ଉତ୍ପତ୍ତି ପ୍ରଳୟନ । ହେଉଛି ଓଁକାରୁ ଜନମ ॥
ସେ ଭୂମି ସର୍ବଦା କାଳେଣ । ଅକ୍ଷୟ ନିତ୍ୟସ୍ଥଳ ନାମ ॥
ବେଦମାନେ ଯେତେ ମାର୍ଗରେ । ବୁଝାଇ ଓଁକାର କହିଲେ ॥
ସର୍ବଦା କାଳରେହିଁ ପୂଣ । ଗୋଚଇ ନୁହଇ ସେ ସ୍ଥାନ ॥
ଚୈତନ୍ୟ ଗୁରୁଙ୍କ ବଚନ । ଶୁଣି ପାବେ ପଡ଼ିଲା ମନ ॥
ଭକତ ହୋଇ ପଚାରଇ । ବେନିକର ଶିରରେ ଦେଇ ॥
ମନ ଦୃଷ୍ଟିକ ଅଗୋଚର । ଅଟଇ ଯେ ଆତ୍ମା ବ୍ରହ୍ମର ॥
ତାହାକୁ କେଉଁରୂପେ ଧ୍ୟାନ । କି ସୂତ୍ରେ କରିବା ଭଜନ ॥
ଅକ୍ଷୟ ଅବ୍ୟୟ ଯେ ସେହି । ରୂପରେଖ ଚିହ୍ନହିଁ ନାହିଁ ॥
କରୂପେ ତାହାକୁ ଅର୍ଚ୍ଚନ । କରିବା କେମନ୍ତେ ଦର୍ଶନ ॥
ମନର ବଚନ ଦେଖିଣ । କହନ୍ତି ଗୁରୁ ଚଇତନ ॥
ଅନାହତରେ ଚିତ୍ତ ଥୋଇ । ଆତ୍ମାବ୍ରହ୍ମ ନିର୍ଣ୍ଣୟ କହି ॥
ଶୁଣ ହେ ମନୁ ମହାଶୟ । ତୋ ମନୁ ଫେଡ଼ିବା ସଂଶୟ ।୧୭୦
ନିର୍ବାଚ ବୋଲିକର ଯେହି । ବଚନେ କହି ଯେ ନୁହଇ ॥
ତହିଁରେ ଜପ ତପ ନାହିଁ । ସେ ଆତ୍ମାପଦ ଯେ ଅଟଇ ॥
ଆତ୍ମାର ପଦ ଯେ ନିର୍ଦ୍ଦ୍ୟନ୍ଦ । ବଚନେ କହି ନୋହେ ଭେଦ ॥
ଭୂଲୋକ ଆଧାର ଚକ୍ରରେ । ଭୁବଲୋକ ଲିଙ୍ଗ ଚକ୍ରରେ ॥
ନାଭିର ଚକ୍ରରେ ସ୍ୱର୍ଲୋକ । ହୃଦୟ ଚକ୍ରେ ମହର୍ଲୋକ ॥
କଣ୍ଠରେ ଜନଲୋକ ରହି । ମୁଖେ ତପଲୋକ ବସଇ ॥

ସପ୍ତଲୋକ ଯେ ଭ୍ରୂମଧ୍ୟେଣ । ଭୂର୍ଭୁବସ୍ବ ମହ ଜନ ॥
ତପ ସତ୍ୟ ଏହୁ ହୁ ଦଶ । ଅକ୍ଷର ହୋଇଛି ପ୍ରକାଶ ॥
ଏମନ୍ତେ ବର୍ଣ୍ଣଭେଦ ହୋଇ । ସପତ ବ୍ୟାହୃତ ବୋଲାଇ ॥
ସପତ ଲୋକରେ ପ୍ରବର୍ତ୍ତି । ଏହାକୁ ଜ୍ଞାନଏ ଜାଣନ୍ତି ।୧୮୦।
ଭୂରାଦିଠାରୁ ସତ୍ୟ ପରେ । ଏ ସପ୍ତ ଲୋକଙ୍କୁ ଗର୍ଭରେ ॥
ଏହୁ ବ୍ରହ୍ମାଣ୍ଡଙ୍କୁ ପ୍ରଣବ । ଧରିଛି ଶୁଣିମା ହେ ଜୀବ ॥
ଅଛଇ କେମନ୍ତ ପ୍ରକାରେ । ଏ ସପ୍ତ ବ୍ୟାହୃତ ଯପାରେ ॥
ଥାଦ୍ୟ ସ୍ଥାନ୍ତି କର କହିବା । ହେ ମନୁ ଫଶସ୍ତୁ ଦହିବା ॥
ଏ ଚତୁର୍ଦ୍ଦଶ ଭୁବନହିଁ । ଜନ ଲୋକ ବୋଲିଣ କହି ॥
ଭୂଃ ଯେ ପୃଥ୍ୱୀ ପ୍ରଣବର । ସେ ମୂଳ ପୀଠ ମୂଳାଧାର ॥
ସେ ସ୍ଥାନ ଭୂଲୋକ ଯେ କହି । ତହିଁ ଭୂଲୋକ ବସିଥାଇ ॥
ଭୂଲୋକେ ଅଧିଭୂତ ଛନ୍ତି । ଲିଙ୍ଗଚକ୍ର ତାକୁ ବୋଲନ୍ତି ॥
ନାଭିଚକ୍ର ତଥି ଉପରେ । ସ୍ୱର୍ଗ ଲୋକଛନ୍ତି ତହିଁରେ ॥
ସେହି ଅନ୍ତରୀକ୍ଷ ଭୁବନ । ତହିଁ ଦେବଲୋକଙ୍କ ସ୍ଥାନ ।୧୯୦।
ମହର୍ଲୋକ ସେହୁ ବୋଲାନ୍ତି । ହୃଦସ୍ତଚକ୍ରେ ବସିଛନ୍ତି ॥
ସେ ଜନ ଜନଲୋକ କହି । କଣ୍ଠ ଚକ୍ରରେ ବସିଥାଇ ॥
ତପସ୍ୱୀ ତପଲୋକ କହି । ସେ ମୁଖ ମଣ୍ଡଳରେ ରହି ॥
ସତ୍ୟଲୋକ ଯାହାକୁ କହି । ସେ ସତ୍ୟେ ଅତଜାତ ହୋଇ ॥
ଭ୍ରୂଲତା ମଧ୍ୟେ ତାଙ୍କ ବାସ । ଧ୍ରୁବଚକ୍ର ନାମ ପ୍ରକାଶ ॥
ଏମନ୍ତେ ସପତ ପ୍ରକାର । ଯେ ସପ୍ତ ପ୍ରଣବ ବସ୍ତୁର ॥
ସପ୍ତମେ ଅଧିଷ୍ଠାନ ହୋଇ । ସପ୍ତ ବ୍ୟାହୃତ ଯେ ବୋଲାଇ ॥
ବ୍ରହ୍ମ ଯେଉଁସ୍ଥାନରେ ସ୍ଥିତ । ଗୋଲୋକ ବୈକୁଣ୍ଠ ବୋଲନ୍ତି ॥
ଗୋଲୋକ ମହିମା କି ବୋଲି । ସେହୁ ଯେ ନିତ୍ୟ ରାସସ୍ଥଳୀ ॥
ଗୋଲୋକ ମିଶିଣ ଏ ଆଠ । ପଦ ପ୍ରବନ୍ଧେ କହ ଠିକ ।୨୦୦।
ଏହୁ ଆଠ ଯେଉଁ ପ୍ରଣବ । ଡାକ୍ଷାଇଲି ମହା ପ୍ରଣବ ॥
ସେ ସଦା ଗର୍ଭର ଭିତରେ । ଏ ଆଠ ପ୍ରଣବକୁ ଧରେ ॥

ଏ ମହା ପ୍ରଣବ ଯେ ତହୁଁ । ମହା ପ୍ରଣବୁ ଜାତ ହୋଇ ॥
ଏ ଅଠ ପ୍ରଣବ ଯେ ହୋଇ । ଶୁଣ ତା ରୂପର ନିର୍ଣ୍ଣଇ ॥
ଏ ଅଠ ପ୍ରଣବ ଅବନା । ଅଛନ୍ତି କହିଲି ସୂଚନା ॥
ପ୍ରଣବେ ମାତ୍ରା ନ ବସଇ । ତା ମାତ୍ରା ଓଁକାର ଅଛଇ ॥
ଓଁକାରେ କେ ମାତ୍ରା ବସାଇ । ସ୍ୱଇଚ୍ଛାରେ ସେ ବହବଇ ॥
ତେଣୁ ଏ ପ୍ରଣବ ଅବନା । ଯାବନ୍ତି ଦେଖନ୍ତି ଭଜନା ॥
ନିତ୍ୟେ ମହାଦେବ ଯେ ତହୁଁ । ଅବନା ଜପ କରୁଥାଇ ॥
ଓଁକାର ଅମ୍ବା ପ୍ରଣବର । ମନ ଚୈତନ୍ୟଙ୍କ ବସ୍ତୁର । ୨୧୦ ।
ଯଦୁ ରଜାକୁ ଅବଧୂତ । କହେ ପିଣ୍ଡ ବ୍ରହ୍ମାଣ୍ଡ ମତ ॥
ନମି ରଜାଙ୍କୁ ନବମୁନି । ଉଦ୍ଧବେ ମାଧବ ଯେ ଭଣି ॥
ପଶ୍ଚେ କହେ ଶୁକମୁନି । ଚଣ୍ଡିକା ଅଗେ ଶୂଳପାଣି ॥
ଅସ୍ମାନ ନିର୍ଣ୍ଣୟ ବୁଝାଇ । ଶୁଣ ସୁଜନେ ମନ ଦେଇ ॥
ସୁଜନେ ମୋରେ କର ଦୟା । ଲେଖିଲି ଦଶିଲାଟି ଯାହା ॥
ଶ୍ରୀଗୁରୁ କଣ୍ଠରେ ବସିଲେ । ମୋତେ ଏ ପଦ କହିଦେଲେ ॥
ନୋହିଲେ ନିଗମରେ ଗମ୍ୟ । କେ କର ପାରଇ ଅଗମ୍ୟ ॥
ଗମନ ପଥ ଏ ନୁହଇ । ଗମିଲି ଗୁରୁଆଜ୍ଞା ପାଇ ॥
ଦେହ ଯନ୍ତ୍ରୁ ମାଗୁଅଛି ମୁହିଁ । ମୋ ଦୋଷ ନ ଧରବ କେହୁ ॥
ନିଗମ ଗୀତାର ଏ ରସ । କହେ ବିପ୍ର ମଦନ ଦାସ ॥
ଅଶଜ୍ୟ ଶ୍ରୀମତୀ ଚରଣ । ଦୁଇଶ ଏକୋଇଶେ ପୂର୍ଣ୍ଣ । ୨୨୧

ଇତି ଶ୍ରୀ ନିଗମଗୀତା ଯୋଗ ଶାସ୍ତ୍ରେ ପରମହଂସ ସଂହିତାୟାଂ
ବସ୍ତୁସିଦ୍ଧ୍ୟାଂ ପ୍ରଣବପୂର୍ବେ ନିର୍ଣ୍ଣୟକଥନେ ନାମ
ଚତୁର୍ଥୋଽଧ୍ୟାୟଃ ।



# ପଞ୍ଚମ ଅଧ୍ୟାୟ ।

ପ୍ରଣବେକଂ ଧୃତ୍ୟସ୍ତସ୍ୟ ଚତୁଃ ଷଷ୍ଟସ୍ୟ ଅଷ୍ଟମେ ।
ଏବଂ ବ୍ରହ୍ମ ଗାୟତ୍ରୀସ୍ୟ ଗାୟତ୍ରୀ ଷଷ୍ଟ ଅକ୍ଷରଂ ॥

ମନ ଉବାଚ ।

ବିନସ୍ବଭାବ ହୋଇ ମନ । ପଦ୍ମରେ ଗୁରୁଙ୍କ ଚରଣ ॥
ପ୍ରଣବ ବିଧାନ ଶୁଣିଲି । ସକଳ ସଂଶୟ ହରିଲି ॥
ମୁକତି ଗତି ଲଭିଲଇଁ । ସୁଗତି ପଥ ଦେଲ କହି ॥
ପାଇଲି ପରମର ଅର୍ଥ । ଅନେକ ଜନ୍ମର ସୁକୃତ ॥
ହ୍ବଣେ ହୋଇଲି ନିର୍ମଳ । ପୂର୍ବେ ମୋ କେତେ ତପଫଳ ॥
ପ୍ରକାଶ ଏବେ ଯେ ହୋଇଲା । ତୁମ୍ଭଙ୍କୁ ଦର୍ଶନ ମିଳିଲା ॥
ମାତା ପିତାଙ୍କର ସୁପୁଣ୍ୟ । ପାଇଲି ଏ ଜ୍ଞାନ ଲୋଚନ ॥
କହିଲ ପ୍ରଣବ ନିର୍ଣ୍ଣୟ । ଗାୟତ୍ରୀ ନିର୍ଣ୍ଣୟ ଯେ କହ ॥
କେମନ୍ତେ ଗାୟତ୍ରୀ ଜନମ । କେତେ ଅକ୍ଷରେ ତା ମରମ ॥
ଦେଖି ମନର ଭକ୍ତିଭାବ । ଚୈତନ୍ୟ ପୁଲକିତ ଅଙ୍ଗ ।୧୦ ।
ବ୍ରହ୍ମ ଗାୟତ୍ରୀର ନିର୍ଣ୍ଣୟ । କହନ୍ତି ପ୍ରେମ ଅଶ୍ରୁ ଶ୍ରେୟ ॥
ଉଦ୍ଧବ ଅଗରେ ମାଧବ । ନାରଦେ ପୁଚ୍ଛେ ବସୁଦେବ ॥
ନିମି ରାଜାଙ୍କୁ ନବମୁନି । ଅମ୍ବିକା ଅଗେ ଶୂଳପାଣି ॥
ପରୀକ୍ଷ ଅଗେ ଶୁକ କହି । ଗାୟତ୍ରୀ ତତ୍ତ୍ୱକୁ ବୁଝାଇ ॥
ଶୁଣ ହୋ ମନ ଏଥି ପୂର୍ବ । କହୁଛି ଏ ଅଷ୍ଟ ପ୍ରଣବ ॥
ପ୍ରଣବ ଗୋଟିକର ତହିଁ । ଅଠ ଅକ୍ଷର ଯେ ବସଇ ॥
ଅଠକୁ ଅଠରେ ଗୁଣିଲେ । ଚୌଷଠି ଅକ୍ଷର ହୋଇଲେ ॥
ହେଲା ଏ ଚଉଷଠି ବେଦ । ଶୁଣ ହୋ ସୁମନ ଏ ଭେଦ ॥
ଏ ଚଉଷଠି ଅକ୍ଷରହିଁ । ନିର୍ମାଣ ବ୍ରହ୍ମ ଗାୟତ୍ରୀହିଁ ॥
ଷାଠିଏ ଅକ୍ଷରେ ଗାୟତ୍ରୀ । ରୂପବର୍ଣ୍ଣ ନିର୍ଣ୍ଣୟ ସ୍ଥିତ । ୨୦ ।
ମୂଳ ଅକ୍ଷର ପ୍ରଣବର । ପ୍ରାଣ ଅଟଇ ନୃପବର ॥

ଏ ଅଠ ପ୍ରଣବ ଯେ ହୋଇ । ମହା ପ୍ରଣବେ ପ୍ରବର୍ତ୍ତିଲ ॥
ସେ ମହା ପ୍ରଣବ ଯେ ବ୍ରହ୍ମ । ଭାଗେ ଗାୟତ୍ରୀର ମରମ ॥
ବ୍ରହ୍ମ ଭାଗରୁ ବ୍ରହ୍ମାଣ୍ଡହିଁ । ବ୍ରହ୍ମ ଗାୟତ୍ରୀ ସେ ବୋଲାଇ ॥
ମହା ପ୍ରଣବେ ଅଠ ମିଶି । ନବ ପ୍ରଣବ ହୋଇଅଛି ॥
ଶେଷ ଅର୍ଦ୍ଧମାତ୍ରା ବିନ୍ଦୁହିଁ । ତହିଁ ଧ୍ୱନି ସଂଯୁକ୍ତ ହୋଇ ॥
ବିନ୍ଦୁ ଧ୍ୱନି ଦୁଇ ସଂଯୁକ୍ତ । ଦଶ ପ୍ରଣବ ହେଲା ଖ୍ୟାତ ॥
ଏ ଦଶ ପ୍ରଣବ ଗାୟତ୍ରୀ । ରୂପର ଦଶଦ୍ୱାରେ ଛନ୍ତି ॥
ଦଶଦ୍ୱାର ଦଶ ଦିଗହିଁ । ଦଶ ଇନ୍ଦ୍ରି ଦଶ ଚକ୍ଷୁହିଁ ॥
ଦଶ କର୍ଣ୍ଣ ହୋଇ ଅଛଇ । ଗାୟତ୍ରୀ ରୂପ ଦେଲ କହ ॥
ପଞ୍ଚାଶ ଅକ୍ଷର ଗାୟତ୍ରୀ । ଅକାରୁ କ୍ଷକାର ଗଣନ୍ତି ॥
ଅକାର ଭେଦରେ ବୁଝାଇ । କହୁଛି ଶୁଣ ନୃପସାଇଁ ॥
ନବ ପ୍ରଣବ ନବ ଧାର । ଦଶ ପ୍ରଣବ ଦଶ ଦ୍ୱାର ॥
ଶିଶୁମୁନା ଦ୍ୱାର ମିଶାଇ । ଓଁକାର ବୋଲାଇଛି ସେହି ॥
ଶିଶୁ ବେଦ ବୋଲି ତାହାକୁ । ଜଣା ଅଛି ମହାଦେବଙ୍କୁ ॥
ଏହି ପରକାରେ ଷାଠିଏ । ଅକ୍ଷର ଗାୟତ୍ରୀ ଯେ ହୋଏ ॥
ଗୂଢ଼ ଅକ୍ଷର ଯେ ବ୍ରହ୍ମର । ସ୍ୱରୂପ ଭଜନ୍ତି ଓଁକାର ॥
ହେ ମନ ଷାଠିଏ ଅକ୍ଷର । ପଠନେ ହୋଇ ବିପ୍ରବର ॥
ବ୍ରହ୍ମର ଗୂଢ଼ ଅକ୍ଷରହିଁ । ଜାଣିଲେ ବ୍ରାହ୍ମଣ ବୋଲାଇ ॥
ଜନ୍ମରୁ ଶୂଦ୍ର ଯେ ବୋଲାଇ । ଯଜ୍ଞୋପବୀତେ ଦ୍ୱିଜ ହୋଇ ।୪୦।
ବେଦ ପଠନେ ବିପ୍ରବର । ବ୍ରହ୍ମ ଜାଣି ବ୍ରାହ୍ମଣ ସାର ॥
ଓଁକାର ଶବଦ ଉଲଟ । ଗୂଢ଼ ଅକ୍ଷର ଯେ ପାଲଟ ॥
ସେହି ଓଁକାରଟି ପରମ । ଶୂନ୍ୟରେ ଯନ୍ତ୍ରିତ ମରମ ॥
ସେ ଶୂନ୍ୟ ସର୍ବଘଟେ ଥାଇ । ନବ ପ୍ରଣବକୁ ଧରଇ ॥
ଦଶ ପ୍ରଣବରେ ଭଜନ । ହେଉଛି ହେତୁକର ମନ ॥
ଶଣକନ୍ତି ଯେ ଶିଶୁବେଦ । ପରମ ରଜ ଯେହ୍ନେ ଶବ୍ଦ ॥
ଉଲ୍‌ଟ ପୁଲ୍‌ଟ ଯେ ହୋଇକରି । ସୋଽହଂ ହଂସ ଅକ୍ଷର ଗୂଢ଼ ॥

ଜୀବର ଭଜନ ଅଟଇ । ଶୁଣ ହୋ ମନୁ ନରପାଇଁ ॥
ଶଣବଦ ଯେ ସୃଷ୍ଟି ହେଲା । ପରରଜ ଯେ ବୋଲାଇଲା ॥
ରଜ ଯେଉଁ ବୋଲାଏ ବ୍ରହ୍ମ । ତହିଁରୁ ଜନମ ପରମ । ୫୦ ।
ତେଣୁ ଏ ପରଂବ୍ରହ୍ମ ହୋଇ । ଅଜପାର ରଜ କୁହାଇ ॥
ହକାର ଶବଦ ବାହାରେ । ଗମଇଁ ସକାର ଭିତରେ ॥
ହକାର ଶବ୍ଦ ଯହିଁ ହୋଇ । ସେ ପରଂବ୍ରହ୍ମର ସ୍ଥାନହିଁ ॥
ସେହି ସ୍ଥାନୁ ହକାର ଜାତ । ଜୀବ ସ୍ୱରୂପରେ ବ୍ୟକତ ॥
ହକାର ପରମ ସ୍ୱରୂପ । କହିଲି ଗୁପତୁଁ ଗୁପତ ॥
ହକାର ସକାର ଉତ୍ପତ୍ତି । ଏକ ସ୍ଥାନରୁ ଯେ ହୁଅନ୍ତି ॥
ସେହି ସ୍ଥାନ ଯେ ମହାବ୍ରହ୍ମ । ଦୁହିଙ୍କର ଅଟଇ ସ୍ଥାନ ॥
ଉଲଟ ପାଲଟ ଅଟଇ । ଦୁଇ ଅକ୍ଷର ସୃଷ୍ଟି ହୋଇ ॥
ସୋଽହଂସକୁ ଜୀବ ଭଜନ୍ତି । ହଂସ ଭଜେ ପରମ ପତି ॥
ଜୀବ ପରମ ସୃଷ୍ଟିଘର । ଭଜନ ଏ ସ୍ୱର ଦ୍ୱାର ॥
ସକାର ଅକ୍ଷର ବ୍ରହ୍ମରୁ । ହକାର ବ୍ରହ୍ମ ସଂଯୁକ୍ତରୁ ॥
ପରମ ସ୍ୱଦେହ ହ ଅକ୍ଷର । ପ୍ରଣବ ଭଜନ ମନ୍ତ୍ରର ॥
ପୁଣ ସେ ସଂଭୂତ ଏ ଦୁଇ । ଅକ୍ଷର ପ୍ରଣବ ଅର୍ଦ୍ଧେହିଁ ॥
ନିତ୍ୟରେ ଭଜନ ଲାଗିଛି । ଏହା ଋଷିଙ୍କେ ଜାଣିଛନ୍ତି ॥
ଅମ୍ବାର ମଧରେ ପରମ । ସୂନ୍ୟରେ ହୋଇଛି ଗନ୍ଥନ ॥
ଏ ତିନି ଅମ୍ବାର ମଧ୍ୟରେ । ପ୍ରକାଶ ହୋଏ କରୂପରେ ॥
ଏହାର ଆଦ୍ୟ ପ୍ରାନ୍ତ ଯେହୁ । କହିଲେ ଯୋଗୀନ୍ଦ୍ରଟି ସେହୁ ॥
ସ ହ ସ୍ୱୟଂ ଦୁଇ ଅକ୍ଷର । ଜାଗି ଯେ ଥାନ୍ତି ସମାନର ॥
ବ୍ରହ୍ମରୁ ସକାର ସଂଭୂତ । ହେବାରୁ ଆଦ୍ୟରେ ସେ ଜାତ ॥
ପ୍ରଣବର ଅର୍ଦ୍ଧ ଊର୍ଦ୍ଧ୍ୱରେ । କୁହାଇଲା ପାନ୍ତ ଅକ୍ଷରେ ॥
ହକାର ଯେଉଁ ମଣ୍ଡଳହିଁ । ସେ ଆଦ୍ୟ ପୁରୁଷ ଅଟଇ ॥
ହକାର ମଣ୍ଡଳକୁ ଧରି । ସେ ଆଦ୍ୟ ଅକ୍ଷର ସଞ୍ଚରି ॥
ସେ ସ୍ଥାନୁ ଜାତ ଯେ ସକାର । ବୋଲାଇଲା ପ୍ରାନ୍ତ ଅକ୍ଷର ॥

ଏ ଯେଉଁ ଶୂନ୍ୟ ଯେ ମଣ୍ଡଳ । ଦୁଇ ଅକ୍ଷର ଅନୁସ୍ୱାର ॥
ତେଣୁକର ହଂସ ବୋଲାଇ । ଅକ୍ଷର ଅଧ ଊର୍ଦ୍ଧ୍ୱେ ବନ୍ଧ ॥
ଏ ଦୁଇ ଊର୍ଦ୍ଧ୍ୱରୁ ଅଧକୁ । ଖସନ୍ତେ ହଂସ ବୋଲି ତାକୁ ॥
ଏମନ୍ତେ ହୋଇ ଉତପ୍ଳୁତ । ସୋହଂହଂସ ଏ ସ୍ୱର ଖ୍ୟାତ ॥
ପରମ ସ୍ୱନ ଗୁଣାଣରେ । ଯୁକ୍ତେ ବାଜୁଛି ନବନ୍ତରେ ॥
ହକାର ସକାର ଏ ଦୁଇ । ଚଳଗେ ବନ୍ଧଛନ୍ତି ଏହି ॥
ପ୍ରଳୟ ଉତ୍ପତ୍ତି ଯେ ସ୍ଥିତ । ଏକଇ ସ୍ଥାନରୁ ହୁଅନ୍ତି ॥
ଶଙ୍ଖରୁ ସକାର ଜନମ । ହୁଅନ୍ତେ ଅଦ୍ୟେ ତାର ନାମ ॥
ବ୍ରହ୍ମ ଅଙ୍ଗେ ଲୀନ ହୁଅନ୍ତେ । ହକାର ଉଛାତ୍ ଯେ ପ୍ରାନ୍ତେ ॥
ଏ ଦୁଇ ଅକ୍ଷର ବଡତ । ମହା ସୂକ୍ଷ୍ମ ସ୍ଥୂଳର ଜ୍ୟୋତି ॥
ଆତ୍ମା ବ୍ରହ୍ମଙ୍କୁ ଯେ ଚହ୍ନନ୍ତି । ଏ ଦୁଇ ଏକତ୍ୱ କରନ୍ତି ॥
ହେ ମନ ପରମ ଧ୍ୱନରେ । ବନ୍ଦୁ ଯନ୍ତ୍ରିତ ସେ ଓଁକାରେ ॥
ସେହି ଓଁକାରୁ ଶବ୍ଦ ଜାତ । ସମସ୍ତେ ପ୍ରଣବରେ ସ୍ଥିତ ॥
ପ୍ରଣବ ଭେଦ ନ ଜାଣଇଁ । ଶବ୍ଦ ଓଁକାର ଭେଦନାହିଁ ॥
ଓଁକାର ନ ଜାଣେ ପର୍ମ । ପରମ ଧ୍ୱନର ମରମ ॥
ଗୋଟିକ ଗୋଟି ଅଗୋଚର । ତେଣୁ ହେଲା ଅପାର ପାର ॥
ଦେବଗୁରୁଙ୍କ ଆଜ୍ଞା ହେଲେ । ପରମ ସୂନ ମିଳେ ଭଲେ ॥
ହକାର ସକାର ଶବ୍ଦହିଁ । ଚହ୍ନିବ କି ବୋଲିଣ ସେହି ॥
ତାହାକୁ ଚହ୍ନିଲେ ଯେ ତହିଁ । ସର୍ବ ପଦାର୍ଥ ଚହ୍ନେ ସେହି ॥
ହେ ମନ ପ୍ରଣବ ବୁଝାଇ । କହିଲି ପୂର୍ବ ଭବିଷ୍ୟହିଁ ॥
ବ୍ୟାହୃତ ଯେମନ୍ତେ ପ୍ରଛନ୍ନ । ବୁଝାଇ କହୁଛି ହେ ମନ ॥
ଭୂର୍ଲୋକଠାରୁ ସତ୍ୟଯାଏ । ସପତ ଲୋକ ଏ କୁହାଏ ॥
ସତ୍ୟ ଉପରେ ଯେଉଁ ପୁର । ନାମଟି ଗୋଲୋକ ବିହାର ॥
ଗୋଲୋକ ଭୁବନ ପ୍ରସ୍ତାବ । କହିବା ତହିଁର ଯେ ଭାବ ॥
ପରମ ସୂନ ଓଁକାରହିଁ । ଛନ୍ଦ ଶବ୍ଦ ଏ ସ୍ୱର ହୋଇ ॥
ଏ ସ୍ୱର ଅଟନ୍ତି ପ୍ରଣବ । ସୁରତ ସୁଖ ଅହୋ ଜୀବ ॥

ମୂଳ ପିଣ୍ଡଠାରୁ ଲଲାଟ । ସପତ ବ୍ୟାହୃତ ପ୍ରକଟ ॥
ତହିଁ ଉପରେ ଗୋଲୋକହିଁ । ମଣ୍ଡଳ ଓଁକାର ଝୀଡ଼ଇ ॥
ଏମନ୍ତେ ଏ ନବ ପ୍ରଣବ । ନବଧା ରୂପରେ ସମ୍ଭବ ॥
ପରମ ସୂନ୍ୟ ଯେ ମିଶିଲା । ଦଶ ପ୍ରଣବ କୁହାଇଲା ॥
ପରମ ସୂନ୍ୟ ଯହିଁ ଷରେ । ଜ୍ୟୋତିରନ୍ଧ୍ର ତଥି ଉପରେ ॥
ସେ ଜ୍ୟୋତିରନ୍ଧ୍ରୁ ସର୍ବେ ଜାତ । ଚଉଦ ଭୁବନ ବଢ଼ତ ॥
ଜ୍ୟୋତିରନ୍ଧ୍ର ଅମ୍ବା ବ୍ରହ୍ମର । ପ୍ରକାଶ ସକଳ କୁହର ॥
ବ୍ରହ୍ମ ଅତି ସୂକ୍ଷ୍ମ ବୋଲିଣ । ଗୀତେ କହିଲେ ଭଗବାନ ॥
ଅତି ସୂକ୍ଷ୍ମ ଅମ୍ବାକୁ କହି । ସ୍ୱୟମ୍ଭୁ ବିଷ୍ଣୁ ସେ ଅଟଇ ॥
ସେହିଟି ହରତା କରତା । ସେହିଟି ସର୍ବ ସନ୍ନିଷ୍ଠତା ॥
ମନ ବୋଲଇ ଚଇତନ । କହିଲୁ ପ୍ରଣବ ବିଧାନ ॥
ଗାୟତ୍ରୀ ନିଶ୍ଚିନ୍ତ କହିବ । ଗୁପତ ପନ୍ଥ ଫିଟାଇବ ॥
ଗାୟତ୍ରୀ କେମନ୍ତ ରୂପରେ । ବିଖ୍ୟାତ ହୋଇଛି ସଂସାରେ ॥
କି ପ୍ରାୟେ ବ୍ରହ୍ମାଣ୍ଡ ସର୍ଜଇ । କହିବା ହେଉ ହେ ଗୋସାଇଁ ॥
ମନକୁ ବୁଝାଇ ଚୈତନ୍ୟ । ଏ ମହାବ୍ରହ୍ମଭାଗ ଶୁଣ ॥
ପ୍ରବଚନ ବୋଲି ବୋଲନ୍ତି । ସେ ସର୍ବଠାରେ ପୂରିଛନ୍ତି ॥
ଅମ୍ବା ବ୍ରହ୍ମ ବୋଲାଏ ସେହି । ସକଳ ଘଟପରେ ରହି ॥
ଏଣୁ ବୁଧଜନେ ବଦନ୍ତି । ସ୍ୱୟମ୍ଭୂ ବିଷ୍ଣୁ ସେ କହନ୍ତି ॥
ସ୍ୱୟମ୍ଭୁ ପୁରୁଷଟି ଯେହି । ସକଳ ଘଟେ ପୂରିଥାଇ ॥
ପାଦ ପାଣି ନଖ ମୁଟବ । ରୂପ ନ ଦିଶଇ ତାହାର ॥
ଅକଳ୍ପିତ ବୋଲାଏ ସେହି । କଳ୍ପଣା ତହିଁ ନ ଲାଗଇ ॥
କଳ୍ପନା ରୂପ ତହୁଁ ହୋଇ । ପରମ ସୂନ୍ୟ ଯେ ଜନ୍ମଇ ॥
ସେ ପରମ ସୂନ୍ୟ ଅଗ୍ନଳ । ତାହାଙ୍କୁ ଜ୍ୟୋତିଜଳ ବୋଲି ॥
ସୂନ୍ୟ ଜ୍ୟୋତି ମଧ୍ୟେ ପରମ । ସୂନ୍ୟରେ ଜ୍ୟୋତିଙ୍କ ମନ୍ଥନ ॥
ମନ୍ଥନେ ଜ୍ୟୋତିରୂପ ହେଲା । ଫେଣ ଯେ ତହୁଁ ଜାତ ହେଲା ।
ସେ ଫେଣ ପଞ୍ଚମାତ୍ରା ହୋଇ । ସେ ବୁଦବୁଦ ଯେ ବୋଲାଇ ॥

ସେ ବୁଦବୁଦ ଭିନ୍ନ ହେଲା । ଅଣ୍ଡ ଆକାର ଯେ ହୋଇଲା ॥
ସେହି ଅଣ୍ଡରୁ ଅଶେଷ । ମହିମା ବ୍ରହ୍ମାଣ୍ଡ ପ୍ରକାଶ ॥
ଯେ ଭିନ୍ନ ସେହି ସେ ଅଣ୍ଡର । ଆକାରରେ ମଣ୍ଡଳାକାର ॥
ସେ ଅଣ୍ଡ ଭିତରେ ପବନ । ପ୍ରକଟି ଅଣ୍ଡ ବିସ୍ତାରଣ ॥
ସେ ଅଣ୍ଡ ବିସ୍ତାରଣ ଖ୍ୟାତ । ଶବଦ ତହୁଁ ହେଲା ଜାତ ॥
ସେହି ଶବଦଟି ଆକାଶ । ଏମନ୍ତେ ଅର୍ଥରେ ପ୍ରକାଶ ॥
ସେହି ମନ ପବନର ଘର । ଶୁଣ ତୁ ଶବଦ ବାହାର ॥
ସେହି ଶବଦର ତେଜରେ । ଅଗ୍ନି ଜାତ ଏ ବ୍ରହ୍ମାଣ୍ଡରେ ॥
ସେ ଅଗ୍ନି ଦୀପ୍ତିରୁ ଓଁ କାର । ଧ୍ୱନି ଜାତ ହୋଇଲା ସାର ॥
ଦୃଷ୍ଟାନ୍ତର ଦେଉ ବୁଝାଇ । କହୁଛି ଶୁଣ ନରସାଇଁ ॥
ଭାଣ୍ଡରେ ଜଳ ଯେ ପୂରଇ । ଯେମନ୍ତେ ଚୁଲିପରେ ଥୋଇ ॥
ତା ତଳେ ଅଗ୍ନି ଜାଳ ଦେଇ । ସେ ଜଳ ଧ୍ୱନି ଯେ କରଇ ॥
ଉଦ୍ଭବ ଧ୍ୱନି ପରି ସେହି । ଜଗତେ ଘୋଷିଣ ଅଛଇ ॥
ଏ ଦବାରୁ ଧ୍ୱନି ନୋହି । ସଂଯୁକ୍ତ ହେବାରୁ ହୁଅଇ ॥
ଏକା ପବନ ନିଗୁଣହିଁ । ଯୁକ୍ତେ ନିମାବାଟି ଅଟଇ ॥
ଅଗ୍ନି ପବନ ଜଳ ହୋଇ । ନିଭାଗେ କରଣ ଜନ୍ମଇ ॥
ସେ ତିନିଭାଗ ସ୍ୱର୍ଗ ମର୍ତ୍ତ୍ୟ । ପାତାଳ ତିନିପୁର ଯାକ ॥
ସେହି ତିନିପୁର ମଧ୍ୟରେ । ଚଉଦ ଭୁବନ ପ୍ରଚରେ ॥
ପ୍ରଣବ କଣ୍ଠିରୁ ଲଲାଟ । ସପତ ବ୍ୟାହୃତି ଧରଠ ॥
ପବନ ସୃଜେ ପୁର ତିନି । ପାରନ୍ତ୍ର ରୂପ ବେଦେ ବର୍ଣ୍ଣି ॥
ଏଣୁ ଏ ବ୍ରହ୍ମାଣ୍ଡ ବିଦିତ । ବେଦର ସ୍ୱରୂପ ନିମିତ୍ତ ॥
ଏ ବେଦେ ଲୋକ ଚତୁର୍ଦ୍ଦଶ । ହୋଇଣ ଅଛନ୍ତି ପ୍ରକାଶ ॥
ଏହି ପବନର ନିବନ୍ଧ । ଲକ୍ଷଣ ବୁଝାଇବା ଭେଦ ॥
ପିଣ୍ଡ ବ୍ରହ୍ମାଣ୍ଡରେ କହିବୁ । ଯେମନ୍ତେ ସରତେ ତୁ ଯିବୁ ॥
ଏଣେ ପବନ ତିନିଗୁଣ । ଅନଳ ପାଣି ଯେ ପବନ ॥
ତିନି ନାମ ରୂପକୁ ବହି । ନିବାଜ ନିର୍ଲୋକେ ବ୍ୟାପଇ ॥

ଗୃହଖାନିରେ ତିନି ବୀଜ । ଉତ୍ପତ୍ତି ସ୍ଥିତ ଯେ ଦହଜ ॥
ଶୁଣ ହୋ ଜଳାଗ୍ନି ପବନ । ଏ ତିନିହେଁ ଏକହିଁ ବର୍ଣ୍ଣି ॥
ପବନେ ଜଳ ଅଗ୍ନି ଥାଇ । ସର୍ବଦାକାଳେ ବହରଇ ॥
ଜଳ ଥିବାରୁ ଏ ପବନ । ଶୀତଳ ବହୁଅଛି ଜାଣ ॥
ଅଗ୍ନି ସକାଶରୁ ତପତ । ବହଇ ଶୁଣ ହୋ ସୁମତ ॥
ଦୃଷ୍ଟାନ୍ତରେ ଦେବାଇଁ କହି । ଶୁଣ ହୋ ମନୁ ନଭସାଇଁ ॥
ବସନ ଓଦା କରି ଜଳେ । ଛାଇରେ ଶୁଖାଇଣ ଦେଲେ ॥
ପବନ ତେଜେ ଶୁଖି ଯାଇ । ଏକଥା ଜାଣିଥାଅ ତୁହି ॥
ଏରୂପେ ଏକ ଗୁଣକରେ । ତ୍ରିଗୁଣ ଯୁକ୍ତ ହୋଇ ଥାରେ ॥
ଏହି ତ୍ରିଗୁଣର ବସ୍ତୁର । କହୁଛି ଶୁଣ ଅର୍ଥ ସାର ॥
ହେ ମନ ପବନ ଅନଳ । ଏ ଦୁହେଁ ଜଳର ଭିତର ॥
ଜଳରୁ ଜାତ ଏହି ଦୁଇ । ତୋ ଆଗେ କହୁଛି ବୁଝାଇ ॥
ଜଳ ଭକ୍ଷିବା ମାତ୍ରକରେ । ଅଜୀର୍ଣ୍ଣ ରୋଗ ପରହରେ ॥
ଲୋହ ଆଦି ଅଷ୍ଟଧାତୁହିଁ । ତକ୍ଷଣେ ତୀକ୍ଷ୍ଣ ସେ କରାଇ ॥
ପବନ ଅନଳ ଜଳହିଁ । ଜନ୍ମୁ ସର୍ବ ସମ୍ମତ ହୋଇ ॥
ତେଣୁ ଏ ବହୁଲେ ପବନ । ଜଳ ଅଗ୍ନି ତା ସଙ୍ଗେତେଣ ॥
ଏ ଯେନି ଜଳର ଭିତରେ । ପବନ ଅଗ୍ନି ବୁଡିଭଲେ ॥
ଜଳାଗ୍ନି ପବନ ନୁହଇ । ଏକଇ ପଦାର୍ଥ ଅଟଇ ॥
ଅଗ୍ନିରୁ ଜଳ ଯେ ପବନ । ହୋଇଲେ କହିବା ତା ଶୁଣ ॥
ଲୌହ ଆଦିକର ପାଷାଣ । ଯହୁଁତେ ଅଗ୍ନିରେ ଦଗ୍ଧେଣ ॥
ଦଗଧ ହୋଇଲେ ତରଳ । ହୁଅଇ ଜାତ ତହୁଁ ଜଳ ॥
ଅଗ୍ନିରେ ହବିଧ ଯେ ଦେଲେ । ପବନେ ଶିଖା ଟେକେ ଭଲେ ॥
ନିର୍ବାତ ଘରେ ଦୀପ ଜାଳ । ପବନେ ଉଠଇ ହାଲୋଳ ।
ଏ ଯେନି ଜଳର ଭିତରେ । ଅଗ୍ନି ପବନ ଯେ ବହରେ ॥
ଅନଳ ପାଣି ଯେ ପବନ । ଏ ତିନି ମାତ୍ର ଉଦ୍ୟମାନ ॥
ଅକାର ଓକାର ମକାର । କରନ୍ତି ତ୍ରିବୀଜ ସଂହାର ॥

ସତ ରଜ ତମ ତ୍ରିଗୁଣ । ବ୍ରହ୍ମା ବିଷ୍ଣୁ ମହେଶ ଜାଣ ॥
ପୁଣ ଯେ ଜନ୍ମୁକ ପଦାର୍ଥ । କହିବା ଶୁଣ ନରନାଥ ॥
ପବନ ଅଗ୍ନି ଏ ଯେ ଦୁଇ । ଜଳରୁ ସମ୍ଭବ ହୁଅଇ ॥
ଏ ତିନିହେଁ ଜୀବ ଯେ ହୋଇ । ସଂସାର ସର୍ଜନା କରଇ ॥
ଅଗ୍ନିର ଗୁଣୁ ବିଷ୍ଣୁ ଜନ୍ମ । ଜଳର ଗୁଣୁ ବ୍ରହ୍ମା ଜାଣ ॥
ପବନ ଗୁଣ ଅଟେ ଶିବ । ଏକ ଗୁଣରୁ ତିନି ଦେବ ॥
ଏ ତ୍ରିଗୁଣ ହୋଇ ଅଛଇ । ଉତ୍ପତ୍ତି ଗୁଣ ବ୍ରହ୍ମା କହି ॥
ସ୍ଥିତି ପାଳନ ହରିଙ୍କର । ସଂହାର ଗୁଣ ମହେଶ୍ୱର ॥
ଏ ତିନିହେଁ ତ୍ରିଗୁଣଧାରୀ । ଏକଇ ବ୍ରହ୍ମରୁ ସଞ୍ଚରି ॥
ଏ ଆତ୍ମା ବ୍ରହ୍ମରୁ ଉତ୍ପତ୍ତି । ସ୍ଥିତି ପାଳନକୁ କରନ୍ତି ॥
ଏମନ୍ତ ଏ ପରମ ବ୍ରହ୍ମ । ତିନି ମୂର୍ତ୍ତି ତହୁଁ ଜନମ ॥
ଉତ୍ପତ୍ତିକାଳରେ ଯେ ବ୍ରହ୍ମା । ପାଳନେ ବିଷ୍ଣୁ ମହାତ୍ମା ॥
ସଂହାରକାଳରେ ଯେ ଶିବ । ଏକଇ ବ୍ରହ୍ମ ଯେ ତ୍ରିଭାଗ ॥
ହୋଇଲେ ଏହି ତିନି ଦେବ । କହୁଛି ଶୁଣ ଅହୋ ଜୀବ ॥
ଦେହ ଧୀରେ ଶିବ ପୁରାଣରେ । ଯା ଉକ୍ତ ହୋଇଛି ଶାସ୍ତ୍ରରେ ॥
ଯେ ରୁଦ୍ର ବିଷ୍ଣୁ ସେ ଅଟଇ । ଯେ ବିଷ୍ଣୁ ବ୍ରହ୍ମା ସେ ବୋଲାଇ ॥
ଏ ତିନିଙ୍କି ଯେ ଭିନ୍ନାଭିନ୍ନ । କରିବ ସେହି ସେ କୁଜନ ॥
ଯେହୁ ଭିନ୍ନାଭିନ୍ନ କରଇ । ବ୍ରହ୍ମହତ୍ୟାର ଦୋଷ ପାଇ ॥
ଏକଇ ବ୍ରହ୍ମ ବୋଲି କହି । ପାଷଣ୍ଡଙ୍କି ଶିବ ବୁଝାଇ ॥
ଭଜ ପରମ ପୁରୁଷଙ୍କୁ । ସେ ପାଇଲେ ତିନି ଦେବଙ୍କ ॥
ତିନି ଦେହରେ ପ୍ରୟୋଜନ । ନାହିଁ କହିବା ଶୁଣ ମନ ॥
ଯେ ସର୍ବ ଜୀବ ବ୍ରହ୍ମ ହୋଇ । ଜୀବଙ୍କ ଭେଦ ମୂଳ କହି ॥
ତ୍ରିଗୁଣ ଜୀବ ବ୍ରହ୍ମ ଟେକି । ନରତେ ଖେଳକୁ ଯେ ଖେଳି ॥
ପ୍ରକୃତି ଧରଣ ତ୍ରିଗୁଣ । ପ୍ରକୃତିଙ୍କର ଏହି ଗୁଣ ॥
ଜୀବ ବ୍ରହ୍ମ ପଡ଼େ ଯେ କେହ । ନାହିଁ ତୋ ଆଗେ କହିଲଇଁ ॥
ତ୍ରିପଦ ଏହି ତ୍ରିଗୁଣ । ପାତାଳ ମର୍ତ୍ତ୍ୟ ସ୍ୱର୍ଗ ଜାଣ ॥

ଏହୁ ତ୍ରିପାଦ ତିନପୁର । ହୋଇଛି ମନେ ହେତୁ ଧର ॥
ଏଣୁକରି ସିନା ଏ ଦେଖି । ପ୍ରଣବ ଅକାର ଅଟଇ ॥
ତିନଖଣ୍ଡ ଏ ତିନପୁର । ହୋଇଛି ଶୁଣ ନୃପବର ॥
ଏ ତିନିଲୋକ ଯେ ଶରୀରେ । ଧରିଛି ପ୍ରଣବ ଅକାରେ ॥
ସପ୍ତଲୋକ ଏହୁ ପ୍ରଣବ । ଧରିଛି ପ୍ରଣବ ଯେ ସର୍ବ ॥
ଏ ନିଗମଗୀତା ଉକତ । ସୁଜନମାନଙ୍କୁ ଏ ହିତ ॥
ଜ୍ଞାନୀ ଜନଙ୍କୁ ଜ୍ଞାନ ଉଦେ । କାମିଜନଙ୍କୁ କାମ ମଦେ ॥
ଭକ୍ତଜନେ ଭକ୍ତି ପ୍ରାପତ । ହୋଇବ ପଢ଼ିଲେ ଏ ଗୀତ ॥
ସୁଜନ ମାନଙ୍କ ସଙ୍ଖାଳ । ଏ ହୃଦରେ ଥିବେ ପାଳ ॥
ଅଜ୍ଞାନୀଙ୍କି ଏ ନ ରୁଚଇ । କହିଲି ତୋହ ଅଗେ ମୁହିଁ ॥
ହେ ସାଧୁଜନେ ମୋର ଦୋଷ । ନ ଘେନ ମୁଁ ତୁମ୍ଭର ଦାସ ॥
ତୁମ୍ଭ ଶ୍ରୀଚରଣର ରେଣୁ । ଆଶ୍ରେ ମୁଁ କରିଅଛି ଯେଣୁ ॥
ତେଣୁ ଶ୍ରୀଗୁରୁ ଆଜ୍ଞା କଲେ । ହୃଦେ ମୋ ପଦକୁ ସ୍ଫୁରିଲେ ॥
ନୋହିଲେ ଏ ସ୍ଥୁର ପାମର । କାହିଁ ପ୍ରବନ୍ଧ ଗୀତା ସାର ॥
କରନ୍ତା ନ ଆସର ମନେ । ଗମନ କରନ୍ତି ନିଗମେ ॥
ଶ୍ରୀମନ୍ତ ଗୁରୁ ପାଦ ଧ୍ୟାଇ । ବିପ୍ର ମଦନ ଦାସ କହି ॥

ଇତି ଶ୍ରୀ ନିଗମଗୀତା ଯୋଗଶାସ୍ତ୍ରେ ଗାୟତ୍ରୀ ପୂର୍ବନିର୍ଣ୍ଣୟ
କଥନେ ମଦନଦାସ ବିରଚିତେ ନାମ ପଞ୍ଚମୋଽଧ୍ୟାୟଃ ।



## ଷଷ୍ଠ ଅଧ୍ୟାୟ ।

ଶ୍ଳୋକଃ ।

ପ୍ରଣବଃ ଽନେକମାନାଣି ସମ୍ଭୂତୋ ଯଦା ଭବେତ୍ ।
ତନ୍ନୈବ ଗାୟତ୍ରୀ ଭାଗା ଲଗ୍ନାସ୍ତୁ ତ୍ରିବିଧାକୃତଃ ॥
ଅକାର ପ୍ରଥମ ପାଦ ପାତାଳ ଅକାର ଭବେତ୍ ।
ଇତି ବ୍ରହ୍ମରୂପ ନ୍ୟସ୍ତ ଯଜୁର୍ବେଦ ଅକାରକଃ ॥

ଉକାର ଦ୍ୱିତୀୟ ପାଦ ମର୍ତ୍ତ୍ୟ ବିଷ୍ଣୁ ସ୍ୱରୂପକ ।
ସାମବେଦ ଦ୍ୱିତୀୟସ୍ୟ ଉକାର ତବ ଲକ୍ଷଣାତ୍ ॥
ମକାର ତୃତୀୟ ପାଦ ସ୍ୱର୍ଗ ରୁଦ୍ର ସ୍ୱରୂପକଂ ।
ଋକ୍‌ବେଦସ୍ତୃତୀୟସ୍ୟ ମକାର ତବ ଲକ୍ଷଣାତ୍ ॥

ଗୀତ ।

ମନକୁ ଚୈତନ୍ୟ ବୁଝାଇ । ଗାୟତ୍ରୀ ନିର୍ଣ୍ଣୟକୁ କହି ॥
ବସୁଦେବ ଆଗେ ନାରଦ । ପାର୍ବତୀ ଈଶ୍ୱର ସମ୍ବାଦ ॥
ଉଦ୍ଧବ ଆଗରେ ଗୋବିନ୍ଦ । କହନ୍ତି ଅକ୍ଷରଙ୍କ ଭେଦ ॥
ଯଦୁ ରାଜାକୁ ଅବଧୂତ । ଶୁକ କହନ୍ତି ପରୀକ୍ଷିତ ॥
ନିମି ରାଜାକୁ ନବମୁନି । କହେ ବ୍ରହ୍ମା ଗାୟତ୍ରୀ ବାଣୀ ॥
ଅନାହତରେ ଚିତ୍ତ ଥୋଇ । ଚୈତନ୍ୟ ଅଦ୍ୟନ୍ତ ବୁଝାଇ ॥
ଶୁଣ ହୋ ମନ ଶୁଦ୍ଧଚେତା । ଗାୟତ୍ରୀ ସ୍ୱରୂପର କଥା ॥
ଅକାର ପ୍ରଥମ ଯେ ପାଦ । ପାତାଳ ବ୍ରହ୍ମ ଯଜୁର୍ବେଦ ॥
ଉକାର ଦ୍ୱିତୀୟ ଯେ ପାଦ । ମର୍ତ୍ତ୍ୟ ବିଷ୍ଣୁହିଁ ସାମବେଦ ॥
ମକାର ତୃତୀୟ ଯେ ପାଦ । ସ୍ୱର୍ଗ ଈଶ୍ୱର ଋକବେଦ ।୧୦।
ଏମନ୍ତେ ତ୍ରିପାଦ ତ୍ରିପୁର । ତ୍ରିବେଦ ସର୍ବେ ଗାୟତ୍ରୀର ॥
ଯେ ବ୍ରହ୍ମମାୟା ଚତୁର୍ପାଦ । ସେହି ଗୋଲୋକ ପୁର ଭେଦ ॥
ସେ ଗୋଲୋକ ପୁରେ ଓଁକାର । କହିଣ ଅଛଇ ବିହାର ॥
ସେହି ଓଁକାରୁ ସର୍ବେ ଜାତ । ଅଥର୍ବବେଦ ସେ ଉଦ୍ଧତ ॥
ଏମନ୍ତେ ଗାୟତ୍ରୀ ଯେ କହି । ଚତୁଃପାଦ କହିଲି ଫେଇ ॥
ସ୍ୱରବେଦ ପରେ ଓଁକାର । ଶିଶୁବେଦ ତା ଉପର ॥
ସେଠାରୁ ସର୍ବେ ଜାତ ହେଲେ । ଭିନ୍ନାଭିନ୍ନ ରୂପ ହୋଇଲେ ॥
ଶେଷ ବିରଞ୍ଚି ସନକାଦି । ସର୍ବାଗତେ ଅଛନ୍ତି ଭେଦ ॥
ସେ ଯେଉଁ ଓଁକାର ଯେ ସ୍ଥାନ । ଯେଉଁ ସୂତ୍ରେ ଧରନ୍ତି ଜାଣ ॥
ସେହି ଅର୍ଥ ଧ୍ୱନି ଯେମନେ । ଜଗନ୍ତ୍ର ଜାଣି ସେହିସ୍ଥାନେ ।୨୦।

ସେହି ଶବଦ ଶୈଶୁବେଦ । କହିଲି ଶୁଣ ହେ କୋବିଦ ।
ସେ ଟଢ଼ ଅଣଢ଼ରୁ ଅସି । ସଂସାରେ ଷଡ଼ଅଛି ଗ୍ରାସି ॥
ଯାହା ଜାଣିଲେ ଗୁରୁବେଦ । ସେ ଅଗୋଚରେ କର ଭେଦ ॥
ଅଷ୍ଟମ ଅଖରରେ ପାଦ । କହିବା ଶୁଣ ତତ୍ତ୍ୱ ବୋଧ ॥
ଓଁକାର ଠାରୁ ଯେ ଅକାର । ଏହି ପ୍ରଥମ ପାଦ ବୀର ॥
ଉକାରଠାରୁ ଯେ ହକାର । ଏହି ଦ୍ୱିତୀୟ ପାଦ ବୀର ॥
ଧକାରଠାରୁ ଯେ ତକାର । ପର୍ଯ୍ୟନ୍ତେ ତୃତୀୟ ପାଦର ॥
ଅବନା ଅଷ୍ଟାକ୍ଷର ଭେଦ । ଯେ ପର ରଜ ଶବଦ ॥
ଏ ଅଠଅକ୍ଷର ମିଶାଇ । ଚତୁଷ୍ପଦା ଗାୟତ୍ରୀ କହି ॥
ଅକାର ପ୍ରଥମ ଯେ ପାଦ । ତକାର ଅକାର ଏ ଭେଦ ।୩୦
ବ୍ରହ୍ମ ସ୍ୱରୂପ ଯଜୁର୍ବେଦ । ତୋ ଆଗେ କହିଲୁଁ ଏ ଭେଦ ॥
ଉକାର ହକାର ପର୍ଯ୍ୟନ୍ତ । ଦ୍ୱିତୀୟ ପାଦ ଏ ବେଦାନ୍ତ ॥
ଉକାର ମାତ୍ରା ବିଷ୍ଣୁ ରୂପ । ଯ୍ୟା ନାମ ସାମବେଦ କଳ୍ପ ॥
ଧକାର ଠାରୁ ଯେ ଏକାର । ତୃତୀୟ ପାଦ ଜାଣ ବୀର ॥
ମକାର ମାତ୍ରା ରୁଦ୍ରଙ୍କର । ଏ ଋକବେଦ ଅର୍ଥସାର ॥
ବିନ୍ଦୁ ଟି ଅବନା ଅଟଇ । ଏ ଅଠଅକ୍ଷର ବୋଲାଇ ॥
ଚତୁଃସମ ଗାୟତ୍ରୀ ଜାଣ । ଅଥର୍ବ ବେଦ ନିରଞ୍ଜନ ॥
ରୂପ କହିଲି ଗାୟତ୍ରୀର । ଶୁଣ ହୋ ମନୁ ନୃପବର ॥
ଏ ତିଅକ୍ଷର ଗାୟତ୍ରୀର । ଗୁରୁପାଦ ସ୍ୱର ମାତ୍ରାର ॥
ଗୁରୁବେଦ ଏହି ବୋଲାଇ । ପଦ ପ୍ରବନ୍ଧେ କହିଲଇଁ ॥
ତିମାତ୍ରା ପରେ ବିନ୍ଦୁ ରହି । ଓଁ କାର ଯହୁଁ ଜାତ ହୋଇ ॥
ଓଁକାର ଶବଦରୁ ବେଦ । ଗାୟତ୍ରୀ ବେଦ ମାତ୍ରା ଭେଦ ॥
ତିମାତ୍ରା ନିର୍ଭର ହୋଇଛି । ବିନ୍ଦୁ ଯେ ତଥିପରେ ଅଛି ॥
ତହିଁର ଜାତ ଯେ ଓଁକାର । ଶିଶୁବେଦ ନାମ ତାହାର ॥
ଏମନ୍ତେ ପଞ୍ଚମ ଯେ ବେଦ । ପଞ୍ଚମ ବେଦରୁ ଶବଦ ।୪୫।
ଶବଦୁଁ ବେଦ ଜାତ ହେଲେ । ବେଦ ଶବଦ ବୋଲାଇଲେ ॥

ଯେତେଠାରୁ ବେଦ ସମ୍ଭୂତ । ହୋଇଛି ବୋଲାଏ ବେଦାନ୍ତ ॥
ଏଣୁ ସେ ବେଦମାତା ହୋଇ । କହିଲି ଗାୟତ୍ରୀ ବୋଲାଇ ॥
ତୁମ୍ଭଙ୍କୁ ପଚରନ୍ତେ ନ ଗଲେ । ଗାୟତ୍ରୀ କଲ୍ପ ଦେଖ ଭଲେ ॥
ଶାସ୍ତ୍ରାର୍ଥରେ ଯାହା ଖୋଜ । କହିଲି ଯାହା ସ୍ପଷ୍ଟରେ ହେଜ ॥
କହିଲି ଯେତେ କଥାଯାକ । ଶୁଣ ହେ ସାଧୁ ସୁବିବେକ ॥
ଯେ ବିପ୍ରମାନେ ଯେତେ ତହିଁ । କହିଲି ଶାକ୍ତକ ଯେ ହୋଇ ॥
ଶକ୍ତି ପୂଜାକୁ କରୁଛନ୍ତି । ସେ ବିପ୍ରେ ଶିବଙ୍କୁ ନ ପାନ୍ତି ॥
ବଇଷ୍ଣବଙ୍କୁ ସେ ନ ପାଇ । ତୁବା ବୋଲିବୁ କାହିଁପାଇଁ ॥
କେମନ୍ତ ପ୍ରକାରେ ହୋଇଲେ । ବ୍ରାହ୍ମଣେ କାହିଁ ଯେ ନୋହିଲେ
ଶାକ୍ତିକ ହୋଇ ଶକ୍ତିପୂଜା । ବ୍ରହ୍ମ କର୍ମ ନ ଜାଣି ଦ୍ୱିଜା ॥
ମଦମାଂସରେ ପୂଜା କରି । ଦେଉଣଥାନ୍ତି ପଶୁବଳି ॥
ରକ୍ତ ଚନ୍ଦନ ମାଳା କରି । ଗଳାରେ ରୁଦ୍ରାକ୍ଷର ମାଳି ॥
ନାକ କାନ ଛୁଇଁ କର୍ମୀଣି । କରି କର୍ମ ତତ୍ତ୍ୱ ନ ଜାଣି ॥
ବୋଲୁଥାନ୍ତି ଅମ୍ଭେ ସ୍ୱକର୍ମୀ । କରୁଛୁଁ ଏ ବେଦ ବାଦକା ।
ନଖ ବାଳ ରଖିଣ ତହିଁ । ଫଳକୁ ଜଣାଇବା ପାଇଁ ॥
ପଇସା ଲୋଭରେ ଅମ୍ଭାକୁ । ଗଞ୍ଜିଣ ପ୍ରାଣୀ ଭଣ୍ଡିବାକୁ ॥
ହରଷ କରିଣ ଭରଷ । ଦେଖାଇ ପ୍ରାଣିଙ୍କି ପୌରୁଷ ॥
ପରଅନ୍ନେ ପୂରାଇ ପେଟ । ହୃଦରେ ରଖିଣ କପଟ ॥
ସେ କାହିଁ କର୍ମକୁ ଘଟାଇ । ଖାଇବେ କର୍ମେ ଯେବେ ନାହିଁ ॥
କର୍ମର ଅନୁସାରେ ଫଳ । ଭୁଞ୍ଜନ୍ତି ପ୍ରାଣି ଭୂମଣ୍ଡଳ ॥
ଏ ଯେଉଁ କର୍ମର ଲକ୍ଷଣ । କେହି ଯେ କରିପାରେ ଆନ ॥
ମାତା ପିତାଙ୍କର ଯୁକ୍ତେଣ । ଯାହା ଯେ ହୋଇଛି ନିର୍ମାଣ ॥
ଏକଥା ନ ଜାଣି ଯେ ପ୍ରାଣୀ । ବ୍ରାହ୍ମଣ ବଚନରେ ଭ୍ରମି ॥
କର୍ମ କରନ୍ତି ନାନାମତେ । ଅମ୍ଭାକୁ ଦମ୍ଭ ଦେବା ଅର୍ଥେ ।
ସେ ଯେବେ କର୍ମକୁ ଘଟାଇ । ଉପାସି ହୁଅନ୍ତେ କିପାଇଁ ॥
ଗ୍ରାମ ଗ୍ରାମରେ ବୁଲି ବୁଲି । ଭିକ୍ଷା ମାଗି ହେଲି ଉପାସି ॥

* ନିଗମ ଗୀତା

ବ୍ରହ୍ମା ବିଷ୍ଣୁ ଶିବ ଯେ କର୍ମ । କରି ଯେ ନ ପାରନ୍ତି ଆନ ॥
କର୍ମକୁ ନ ଛାଡ଼ି ବ୍ରାହ୍ମଣ । କର୍ମ କରନ୍ତି ହୋଇ ଭ୍ରମ ॥
କର୍ମକୁ ନ ଜାଣି ଶ୍ରୀରାମ । ଚଉଦ ବର୍ଷ ଅରଣ୍ୟ ॥
ପଶିଲେ କର୍ମରେ ଥିବାରେ । ଭାଇ ଭାରିଯା ସଙ୍ଗତରେ ॥
ନେଇଣ କର୍ମକୁ ନ ଜାଣି । କର୍ମ ଦଣ୍ଡ ଧରି ଭ୍ରମଣି ॥
କୁଶଳ ପରିସ୍ୱେ ଗଡ଼ୁଛି । ଭାଙ୍ଗୁଛି ନିତ ନର୍ଭି ଉଛି ॥
କର୍ମକୁ ନ ଜାଣି ଈଶ୍ୱରେ । ମାତାଙ୍କୁ ହରଣ ଯେ କଲେ ॥
ବ୍ରହ୍ମହତ୍ୟା ଦୋଷକୁ କରି । ତେଜିଲେ କଇଳାସ ଗିରି ।୮୦
ଶ୍ମଶାନବାସୀ ଯେ ହୋଇଲେ । ଅସ୍ଥିମାଳା ହୃଦେ ବହିଲେ ॥
ଇନ୍ଦ୍ରଦେବ କର୍ମ ନ ଜାଣି । ହରିଲେ ଗଉତମ ପତ୍ନୀ ॥
ବ୍ରହ୍ମା ଶାପରେ ତାଙ୍କର । ସହସ୍ର ଯୋନି ଯେ ଶରୀର ॥
ଚନ୍ଦ୍ରଦେବ କର୍ମେ ଭୁଲିଲେ । ଗୁରୁ ପତ୍ନୀଙ୍କି ଯେ ହରିଲେ ॥
ପକ୍ଷେ ମରି ପକ୍ଷେ ଜୀଅନ୍ତି । କଳଙ୍କ ଅଙ୍ଗରେ ବହନ୍ତି ॥
ସୂର୍ଯ୍ୟ ଦେବତା ମରେ ଭ୍ରମି । କର୍ମକୁ ନ ପାରଇ ଜାଣି ॥
ଏତେ ଲୋକମାନେ କର୍ମକୁ । ଭୁଞ୍ଜିଲେ କହିବେ କାହାକୁ ॥
ଏହା ନ ବୁଝି ମୂଢ଼ ପ୍ରାଣୀ । କର୍ମ କରନ୍ତି ଗର୍ଥେ ଭ୍ରମି ॥
ବ୍ୟର୍ଥ କଲେ ସାର୍ଥ ଜୀବନ । ନ ଭଜିଲେ ଯେ ନିଜ ନାମ ॥
ଦୋଷ ନ ଧର ସୁଜ୍ଞଜନ । କହିଲି ଏ ସାର୍ଥ ବଚନ ॥
କୀଟଠୁଁ ବ୍ରହ୍ମଯାଏ ଯେ ଜନ । ସମସ୍ତେ କର୍ମର ଅଧୀନ ॥
ଦେବତା କର୍ମ ଅନୁସାରେ । ପ୍ରାଣୀଙ୍କି ତୋଷୁଥାନ୍ତି ବରେ ॥
କର୍ମ ବାହାରେ ନ ହଅନ୍ତି । ପାମରେ ଏହା ନ ବୁଝନ୍ତି ॥
ମୁଁ ଏବେ କରୁଅଛି ମନ । ଛାଡ଼ ତୁ କର୍ମର ବନ୍ଧନ ॥
କେବଳ କୃଷ୍ଣର ଚରଣ । ଆଶ୍ରିତେ ନ ଦଣ୍ଡିବ ଯମ ॥
ଏତେକ କହୁଅଛି ମୁହିଁ । କାମନା ନ ରଖ ଯେ ତୁହି ॥
ନିଷ୍କାମ ଭାବେ ଛାଡ଼ି ଥୁଅ । ଗୋବିନ୍ଦ ପାଦେ କର ଲକ୍ଷ୍ୟ ॥
ବୃନ୍ଦାବନ ପାଦାରବିନ୍ଦର । ସୁଧା ବହୁଛି ନବଧାର ॥

ନବଧାରେ ଯେ ଭକ୍ତକର । ତେବେ ହୋଇବୁ ଭବୁ ପାର ॥
ଗୋ ଉମାଙ୍କର ଯେ ବନ୍ଦନ । ହେବାରୁ ଗୋବନ୍ଦ ତା ନାମ ॥
ଗଉଛି ଗୋମାତା ବୋଲାଇ । ସେହୁ ବେଦମାତାଟି ହୋଇ ॥
ଗୋବନ୍ଦ ତହିଁରୁ ଜନମ । ଅର୍ଥ କହୁଛି ଶୁଣ ମନ ॥
ବେଦରୁ ବ୍ରହ୍ମା ଯେ ଉତ୍ପତ୍ତି । ହେବାରୁ ତା ନାମ ଗାୟତ୍ରୀ ॥
ବ୍ରହ୍ମ ଗାୟତ୍ରୀର ଯେ ତତ୍ତ୍ୱ । ନ ପାଇ ବ୍ରାହ୍ମଣେ ଅଚେତ ॥
ଅଧମ ପଣେ ଧନ ନେଲେ । ଗାୟତ୍ରୀ କେହୁ ନ ଜାଣିଲେ ॥
ଗାୟତ୍ରୀ କେମନ୍ତେ ଅଟନ୍ତି । ଗାୟତ୍ରୀ ପରେ କେହୁ ସ୍ଥିତ ॥
ଗାୟତ୍ରୀ କେମନ୍ତ ଯେ ମୂର୍ତ୍ତି । ଗାୟତ୍ରୀ କପାଁ ହୋଇଛନ୍ତି ॥
ଗାୟତ୍ରି ବୋଲଣ ଦ୍ୱିଅକ୍ଷର । ସ୍ତ୍ରୀଲିଙ୍ଗ ଅଟଇ ହେ ବୀର ॥
ଏକା ଗାଇ ଯେ ତନରୂପ । ହେବାରୁ ଗାୟତ୍ରୀ ସ୍ୱରୂପ ॥
ଗାୟତ୍ରୀ ସ୍ତ୍ରିସ କବା ହୋଇ । ପୁରୁଷ ଅଟଇଟି ସେହୁ ॥
ଏ ଭେଦ ବିପ୍ରେ ନ ପାଇଲେ । ଶୈବ ବୈଷ୍ଣବ ନ ବାରିଲେ ॥
ବେଦ ଗାୟତ୍ରୀ ଉପାସିକ । ଶାକ୍ତିକ ବିଦ୍ୟା କଲେ ଟେକ ॥
ଶକ୍ତି ପୂଜାକୁ ଅଗ୍ରେ କଲେ । ମୁକ୍ତିର ପଥକୁ ଛାଡ଼ିଲେ ॥
ଶୁଣ ହୋ ମନ ସାବଧାନ । ବ୍ରହ୍ମ ଗାୟତ୍ରୀର ବିଧାନ ॥
ଆଦ୍ୟ ପ୍ରାନ୍ତ କରି ବୁଝାଇ । କହିବି ଶୁଣ ନରସାଇଁ ॥
ଯେମନ୍ତେ ଗାୟତ୍ରୀ ଜନମ । ଯେଉଁଠାରେ ତାର ବିଶ୍ରାମ ॥
ରୂପବର୍ଣ୍ଣ ଛନ୍ଦ ତାହାର । ତୋ ଆଗେ କହୁଅଛି ବୀର ॥
ଭୂର୍ଲୋକ ଭୁବ ସ୍ୱର୍ଗଲୋକେ । ଏହୁ ତ୍ରୀବୀଜ ବୀର ଦେଖ ॥
ତ୍ରିମାତ୍ରା ତପଲୋକ ବ୍ରହ୍ମ । ତାପରେ ବିନ୍ଦୁକୁ ତୁ ହେଜ ॥
ତାପରେ ଓଁକାର ବେଦାର । ତପଲୋକ ଧରିଛି ବୀର ॥
ତେଣୁ ଓଁକାର ମନ୍ତ୍ରାବୀଜ । ତୋ ଅଗେ କହେ ମନ ସଜ ॥
ଭୂର୍ଭୁବ ସ୍ୱର୍ଲୋକ ତ୍ରିଲୋକ । ଗାୟତ୍ରୀରୂପ ଜଗତ୍ୟାକ ॥
ଓଁ କାର ଯେମନ୍ତ ଭଜନ । ଯେଉଁ ପ୍ରକାରେ ଶୁଣ ମନ ॥
ଓଁ କାର ପରମ ସୂତ୍ରରେ । ଧାରଣା ହେଉଛି ସଂସାରେ ॥

ତେଣୁ ଏ ପରମ ସୂକ୍ଷ୍ମହିଁ । ଓଁ କାର ଉପରରେ ଥାଇ ॥
ପରମସୂକ୍ଷ୍ମର ଉପରେ । ଆତ୍ମା ବ୍ରହ୍ମ ପୂର୍ଣ୍ଣ ସଦାରେ ॥
ତଥିପରେ ଆତ୍ମା ପରମ । ସୂକ୍ଷ୍ମ ଧରିଥାଇ ମରମ ॥
ଆତ୍ମା ପରମ ଜ୍ୟୋତି ପୂର୍ଣ୍ଣ । ବ୍ୟାପିଛି ସର୍ବଘଟେ ଜାଣ ॥
ଯେମନ୍ତେ ସୂର୍ଯ୍ୟର କିରଣ । ପଡ଼ୁଛି ବ୍ରହ୍ମାଣ୍ଡ ମଧ୍ୟେଣ ॥
ତପତ ପବନ ସେ ଜ୍ୟୋତି । କିରଣ ପ୍ରକାଶି ଅଛନ୍ତି ॥
ସେ ବାୟୁରୁ ଧ୍ୱନି ସମ୍ଭୂତ । ହୋଇ ଧ୍ୱନି ବିନ୍ଦୁ ସଂଯୁକ୍ତ ॥
ଧ୍ୱନି ବିନ୍ଦୁ ସଂଯୋଗୁ ପଥ । ଜାତବେଦ ଜାତ ଶବଦ ॥
ସେବିନ୍ଦୁ ବିନ୍ଦୁ ମାତ୍ରା ପର । ଅଛି ତୋ ଦେହେ ହେତୁକର ॥
ତ୍ରିମାତ୍ରା ଯେହୁଟି ଅକାର । ଉକାର ମକାର ତ୍ର୍ୟକ୍ଷର ॥
ଏ ତିନକ୍ଷର ଏକ ଏକ ଏକ । ତିନି ସ୍ଥାନରେ ଛନ୍ଦ ଦେଖ ॥
କେ କାହାଭେଦ ନ ଜାଣନ୍ତି । ଦେଖାଦେଖି ସେହୁ ନୂହନ୍ତି ॥
ଏ ତିନ ବେଦ ତିନଗୁଣ । ତ୍ରିମାତ୍ରା ତିନିବେଦ ଜାଣ ॥
ଭୂର୍ଭୁବଃସ୍ୱ ତିନପାଦ । ତ୍ରିପୁର ଗାୟତ୍ରୀର ଭେଦ ॥
ପ୍ରଣବ ସ୍ୱରୂପଟି ଏହି । ଗାୟତ୍ରୀ ସ୍ୱରୂପକୁ କହି ॥
ହୋଇବାରୁ ଯେ ତିନଭାଗ । ଗାୟତ୍ରୀ ବୋଲାଇଲା ଅଙ୍ଗ ॥
ପ୍ରାତଃ ମଧ୍ୟାହ୍ନ ସାୟଂକାଳ । ଏ ତ୍ରି ଭାଗେ ଦିବସ ବେଳ ॥
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ଏ ତିନ । ପ୍ରକାଶ ଏ ଦିବାରଜନୀ ॥
ରାତ୍ର ଦିବସ ସନ୍ଧ୍ୟା ଏହି । ତ୍ରିଭାଗ ଦିନଗୋଟି ହୋଇ ॥
ଏଣୁ ଏ ଗାୟତ୍ରୀ ବୋଲାଇ । ତତ୍ତ୍ୱସାର ମୁଁ ଦେଲି କହି ॥
ଗାୟତ୍ରୀରୂପ ବର୍ଣ୍ଣି କହି । ଦେଲି ଶୁଣ ହେ ନରସାଇଁ ॥
ଭଗବତ୍ ଗୀତାରେ ଅର୍ଜୁନ । ଆଗରେ ଶ୍ରୀକୃଷ୍ଣ ବଖାଣ ॥
ଶ୍ରୀମୁଖେ ଆଜ୍ଞା ଦେଇଛନ୍ତି । ମୁଁ ସର୍ବଠାରେ ହୋଇସ୍ଥିତି ॥
ସର୍ବଘଟେ ମୁଁ ପୂର୍ଣ୍ଣ ବ୍ରହ୍ମ । ଦେଖ ତୋର ଜ୍ଞାନଲୋଚନ ॥
ମୋର ଉପରେ ବଡ଼ କେହି । ପଦାର୍ଥେକ ବ୍ରହ୍ମାଣ୍ଡେ ନାହିଁ ॥
ସର୍ବଘଟେ ମୁଁ ଯେଉଁରୂପେ । ବସିଛି ଶୁଣ ହେ ବହୁପେ ॥

ଏକ ସୂତାରେ ନାନାବର୍ଣ୍ଣେ । ମଣିଗୁନ୍ଥା ହୋଇ ଯତନେ ॥
ମାଳହୋଇଣ ଲମ୍ବି ଥାଇ । ଏହିରୂପେ ମୋର ଏକଇ ॥
ସୂତ୍ରରେ ସର୍ବେ ଗୁନ୍ଥାହୋଇ । ଏଭେଦ କେହି ନ ଜାଣଇ ॥
ନୋହେ ସେ ମୁହିଁ ଅଗୋଚର । ଆଦିଅନ୍ତ ନାହିଁ ଯେ ମୋର ॥
ଶୁଣିଣ ଶ୍ରୀମୁଖ ବଚନ । ସନ୍ତୋଷ ହୋଇଲା ଅର୍ଜୁନ ॥
ଏବେ ମୁଁ ଗାୟତ୍ରୀର ଭେଦ । କହୁଛି ଶୁଣ ମନୁ ଇନ୍ଦ୍ର ॥
ଏ ପ୍ରାତଃ ମଧ୍ୟାହ୍ନ ସାୟାହ୍ନ । ତ୍ରିଭାଗେ ସନ୍ଧ୍ୟାବ୍ରତ ଦ୍ୱିଜ ॥
ଚବିଶେ ତ୍ରିପଦା ହୋଇଣ । ବ୍ରହ୍ମ ଗାୟତ୍ରୀ ଯେ ନିର୍ମାଣ ॥
ତ୍ରିମାତ୍ରା ତ୍ରିଦେବ ତ୍ରିଗୁଣ । ତ୍ରିଦେବ ଚନ୍ଦ୍ର ସୂର୍ଯ୍ୟାଗ୍ନିଣ ॥
ତ୍ରିପୁର ଏ ଚବିଶାକ୍ଷର । ଗାୟତ୍ରୀମନେ ହେତୁ ଧର ॥
ତ୍ରିପଦା ଏହି ଯେ ବୋଲାଇ । ଭୂର୍ଭୁବଃସ୍ୱ ବ୍ରହ୍ମ କହି ॥
ଏ ସ୍ତୁର ଅକ୍ଷର ମିଶିଣ । ବ୍ରହ୍ମ ଗାୟତ୍ରୀ ଯେ ନିର୍ମାଣ ॥
ଅଠାଇଶ ବ୍ରହ୍ମ ଗାୟତ୍ରୀ । ବ୍ରାହ୍ମଣଙ୍କ ଭଜନା ନିତି ॥
ତଥି ମଧ୍ୟରୁ ଯେ ଗାୟତ୍ରୀ । ସାବିତ୍ରୀ ଆଦି ସରସ୍ୱତୀ ॥
ଏ ତିନିହେଁ ହୋଇଲେ ଜନ୍ମ । କହୁଛୁ ଶୁଣ ଅହୋ ମନ ॥
ଏ ଗାୟତ୍ରୀର ଭେଦ ଯେହୁ । ଯେ ଜାଣେ ପଣ୍ଡିତଟି ସେହୁ ॥
ସାବିତ୍ରୀ ଭେଦ ଏବେ ଶୁଣ । କହୁଛି ସ୍ଥିର କରି ମନ ॥
ପ୍ରାତଃକାଳେ ସାବିତ୍ରୀ ହୋଇ । ଅଷ୍ଟମ ଅକ୍ଷର ଅଟଇ ॥
ଅଷ୍ଟମାକ୍ଷର ମଧ୍ୟାହ୍ନର । ସାୟାହ୍ନ କାଳେ ଅଷ୍ଟାକ୍ଷର ॥
ଏମନ୍ତେ ହେଲା ଯେ ତ୍ରିକାଳ । ତ୍ରିକାଳ ଚଉବିଂଶାକ୍ଷର ॥
ତ୍ରିଭାଗ ଏଣୁ ଏ ଶରୀର । ତେଣୁ ସାବିତ୍ରୀ ଏ ସଂସାର ॥
ବ୍ୟାପିଛି ଏ ସଚରାଚର । ଶୁଣ କହୁଛି ମନୁ ବୀର ॥
ଭୂର୍ଲୋକ ଭୁବର୍ଲୋକ ଯେହି । ସ୍ୱର୍ଗଲୋକ ତ୍ରିବୀଜ ହୋଇ ॥
ଭୂର୍ଭୁବଃସ୍ୱ ସ୍ୱର୍ଗ ମର୍ତ୍ତ୍ୟ । ପାତାଳ ତିନିଲୋକ ଯାକ ॥
ଏଣୁ ଏ ବ୍ରହ୍ମାଣ୍ଡ ତ୍ରିଭାଗ । ହୋଇଲା ଶୁଣ ମନୁ ବେଦ ॥
ତ୍ରିଭାଗେ ହେଲା ଗତାଗତ । ତେଣୁ ସାବିତ୍ରୀ ନାମେ ଖ୍ୟାତ ॥

ଏକା ଏ ସୂର୍ଯ୍ୟଙ୍କ ତ୍ରିଧାମ । ହେବାରୁ ସାବିତ୍ରୀ ତା ନାମ ॥
ଉଦୟ ମଧ୍ୟାହ୍ନ ସାୟାହ୍ନ । ଏ ତିନି ଏକରୂପ ଜାଣ ॥
ରକ୍ତବର୍ଣ୍ଣ କୃଷ୍ଣ ବର୍ଣ୍ଣହିଁ । ଶୁକ୍ଳବର୍ଣ୍ଣ ତ୍ରିକାଳେ ହୋଇ ॥
ତ୍ରିକାଳକୁ ଯେ ତିନିବର୍ଣ୍ଣ । ଗାୟତ୍ରୀ ତ୍ରିଭାଗ ହୋଇଣ ॥
ଚୌବିଂଶ ଅକ୍ଷର ହୋଇଣ । ସର୍ବ ହେବା ହୋଏ ଭଜନ ॥
ସୂର୍ଯ୍ୟ ଉଦୟ ଅସ୍ତ ଯାଏ । ତ୍ରିକାଳେ ତିନିବର୍ଣ୍ଣ ହୋଏ ॥
ତ୍ରିମାତ୍ରା ତ୍ରିପୁର ତ୍ରିପାଦ । ତ୍ରିଦେବ ତିନିଗୁଣ ଭେଦ ॥
ଏମନ୍ତେ ତ୍ରିଭାଗ ହୋଇଣ । ଗାୟତ୍ରୀରୂପ ହେଲା ଜାଣ ॥
ଏକାଦବଧେ ସୂର୍ଯ୍ୟ କଳା । ତିନି ରୂପ ଯେ ପ୍ରବର୍ତ୍ତିଲା ॥
ପ୍ରାତଃ କାଳରେ ଯେ ଗାୟତ୍ରୀ । ରକ୍ତବର୍ଣ୍ଣ ବାଳକାମୂର୍ତ୍ତି ॥
ଅଦ ଅକ୍ଷର ଅଦ୍ୟପାଦ । ହେଲା ସ୍ୱର୍ଗପୁର ସମ୍ପଦ ॥
ଗାୟତ୍ରୀ ନୟନ ଯେ ତିନି । ରବି ଶଶାଙ୍କ ଯେ ବହ୍ନି ॥
ରକତ ବସନ ଭୂଷଣି । ଅଟନ୍ତି ସେ ଚତୁର୍ବଦନ ॥
ପରମ ହଂସକୁ ବାହନ । ସର୍ବଦା କରଛନ୍ତି ଜାଣ ॥
ବ୍ରହ୍ମାଣ୍ଡ ଭାଣ୍ଡ କମଣ୍ଡଳ । କରି ସର୍ବଦା ଧରି କର ॥
ବ୍ରହ୍ମାୟଣୀ ନାମ ତାହାର । ସେହନ୍ତି ବ୍ରହ୍ମା ଦେବ ତାର ॥
ବ୍ରହ୍ମ ଲୋକରେ ସଦା ଥାଇ । ନିରତେ ଯଜୁର୍ବେଦ ଧ୍ୟାଇ ॥
ବ୍ରହ୍ମାର ବାହନୀ ଅଟଇ । ଶୁଣ ହେ ମନୁ ଜରସାଇଁ ॥
ବ୍ୟାହୃତ ଦ୍ୱାଦଶ ଅକ୍ଷର । ତ୍ରିପଦା ଚତୁର୍ବିଂଶାକ୍ଷର ॥
ଚୂଡ଼ା ଚତୁର୍ଦ୍ଦଶ ଅକ୍ଷର । ପ୍ରଣବ ଦଶ ଯେ ଅକ୍ଷର ॥
ଏମନ୍ତେ ଷାଠିଏ ଅକ୍ଷର । ଗାୟତ୍ରୀପିଣ୍ଡ ଜାଣ ବୀର ॥
ଯାହାର ସନ୍ଦେହ ହୋଇବ । ସାବିତ୍ରୀ କଳ୍ପରେ ଦେଖିବ ॥
ଆଦ୍ୟ ପ୍ରାନ୍ତ କରି ବୁଝାଇ । ଅଛନ୍ତି ବୁଧଜନେ କହି ॥
ଗାୟତ୍ରୀମାତା ଏ ଅକ୍ଷର । ବ୍ରହ୍ମାରୂପ ଗୂଢ଼ାକ୍ଷର ॥
ପରମ ସୂତ୍ରରେ ଧାରଣ । କହିଲି ଅଟଇ ସୁମନ ॥
ସେ ସୂତ୍ର ହୃଦରେ ଧରନ୍ତି । ଗାୟତ୍ରୀଙ୍କି ଜପ କରନ୍ତି ॥

ତେଣୁକରି ବ୍ରାହ୍ମଣମାନେ । ବ୍ରହ୍ମ ସଙ୍ଗିକ ବୋଲି ଜନେ ॥
ଯେ ସୂର୍ଯ୍ୟେ ଅସ୍ମାଗତାଗତ । ନିଶି ଦିବସରେ ଯନ୍ଧିତ ॥
ସେହି ସୂର୍ଯ୍ୟେ ବ୍ରହ୍ମା ଗୃରଘର । ଭଜନ ଏ ସବ ଦିବାର ॥
ତେଣୁକରି ଦେଖ ଗାୟତ୍ରୀ । ଏ ବ୍ରହ୍ମ ବାଦନୀ ଅଟନ୍ତି ॥
ଅଦ୍ୟପ୍ରାନ୍ତ କରି କହନ୍ତି । ଯେମନ୍ତେ ହୋଇଲା ଗାୟତ୍ରୀ ॥
ଜନମକାଳରୁ ବ୍ରାହ୍ମଣ । ମାନଙ୍କୁ ଶୂଦ୍ର ବୋଲି ଜାଣ ॥
ଯଜ୍ଞ ପବିତ୍ର କଣ୍ଠେ ବନ୍ଧି । ସେ ପୁଣ ଦ୍ୱିଜ ଯେ ବୋଲାଇ ॥
ଷାଠିଏ ଅକ୍ଷର ଜାଣିଲେ । ବ୍ରାହ୍ମଣ ବ୍ରହ୍ମକୁ ଚିହ୍ନିଲେ ॥
ଗାୟତ୍ରୀ ମନ୍ତ୍ର ଯେ ବୁଝାଇ । କହିଲି ଶୁଣ ନରସାଇଁ ॥
ପଦ ପ୍ରବନ୍ଧରେ ପ୍ରକାଶ । ନିଗମ ଗୀତାର ଯେ ରସ ॥
ପଢ଼ିଲେ ଭକତ ହୋଇବ । ମୃତ୍ୟୁ ତାପରୁ ମୁକ୍ତ ହେବ ॥
ବ୍ରହ୍ମଜ୍ଞାନୀ ବ୍ରହ୍ମ ଚିହ୍ନିବ । ଅସ୍ମାରୁ କାମନା ତୁଟିବ ॥
କାମନା ତୁଟିବ ଯେ ତାର । ଯମ ନ ଦଣ୍ଡେ ତମ ଦୂର ॥
ଅନ୍ତେ ବଇକୁଣ୍ଠେ ବସିବ । ପରମ ପଦକୁ ପାଇବ ॥
ପରମ ରସକୁ ଅନନ୍ଦ । ସେଇ ନୋହିବ ଜନ୍ମ ବଧ ॥
ଦୁଇଶ କୋଡ଼ିଏ ପଦର । ଷଷ୍ଠ ଅଧ୍ୟାୟ ପୂରିର ॥
ଶ୍ରୀମନ୍ତ ଗୁରୁଙ୍କ ଚରଣ । ଆଶ୍ରୟ କରଣ ମଦନ ॥
ନିଗମଗୀତା ବ୍ରହ୍ମ ରସ । ଶୁଣିଲେ ପାପ ହେବ ଧ୍ୱଂସ ॥

ଇତି ଶ୍ରୀ ଯୋଗଶାସ୍ତ୍ରେ ବ୍ରହ୍ମବିଦ୍ୟାୟାଂ ଅଥର୍ବ ବେଦାନ୍ତ ଅର୍ଥ
ବିସ୍ତରଣେ ଗାୟତ୍ରୀନିର୍ଣ୍ଣୟେ କଥନେ ମଦନଦାସ
ବିରଚିତେ ନାମ ଷଷ୍ଠୋଽଧ୍ୟାୟଃ ।



# ସପ୍ତମ ଅଧ୍ୟାୟ ।

## ଶ୍ଳୋକଃ ।

ସାବିତ୍ରୀ ଶୁକ୍ଳବର୍ଣ୍ଣାଞ୍ଚ ବିଷ୍ଣୁରୂପାଞ୍ଚ ମଧ୍ୟମା ।
ସ୍ଥିତ ପାଳସ୍ଥଳେ ଭ୍ରୂମଧ୍ୟେ ଗାୟତ୍ର୍ୟଷ୍ଟାକ୍ଷରଂ ଭବେତ୍ ॥

ମନ ପଚାରେ ଚଇତନ । କହିଲ ଗାୟତ୍ରୀ ବିଧାନ ॥
ସାବିତ୍ରୀ ବିଧାନ ବୁଝାଇ । କହିବ ଯେଣେ ସିଦ୍ଧି ହୋଇ ॥
କେଉଁ ରୂପବର୍ଣ୍ଣ ବୟସ । କେଉଁ ଲୋକରେ ତାର ବାସ ॥
କେତେ ପାଦ କେତେ ଅକ୍ଷର । ଭଜନ ହୋଏ କେଉଁଠାର ॥
କେଉଁ ବାହନେ ଗତାଗତ । ବନାଇ ଅବନା ଯେ ଖ୍ୟାତ ॥
ସାବିତ୍ରୀ ନାମ ତା କେମନ୍ତ । କାହିଁ ସେ ହୋଇଲେ ସମ୍ଭୂତ ॥
ମନ ଉତ୍ପତ୍ତି ଦେଖିଜର । ସାବିତ୍ରୀ ନିର୍ଣ୍ଣୟ ବିସ୍ତାର ॥
ପଦ୍ମାସନ ସମାଧି ନେଇ । ଅନାହତରେ ଚିତ୍ତ ଥୋଇ ॥
ଜୀବକୁ ପରମ ବୁଝାଇ । ଉଦ୍ଧବେ ମାଧବ ଯେ କହି ॥
ଯଦୁରାଜାକୁ ଅବଧୂତ । ଏ ଷଡ଼ ସମ୍ବାଦ ଚରିତ ॥
ନିମି ରାଜାଙ୍କୁ ନବମୁନି । ଶୁକ ଯେ ପରୀକ୍ଷିତେ ଭଣି ॥
ବସୁଦେବ ଅଗେ ନାରଦ । ସ୍ୱର୍ଗସ୍ଥଳ ପାଣି ସମ୍ବାଦ ॥
ସାବିତ୍ରୀ ନିର୍ଣ୍ଣୟକୁ କହି । ଆଦ୍ୟ ପ୍ରାନ୍ତ କର ବୁଝାଇ ॥
ଧନ୍ୟ ଜୀବନ ତୋର ମନ । ମାତା ପିତାଙ୍କର ସୁପୁଣ୍ୟ ॥
ତୋହ ଯୋଗରେ ମୁହିଁ ଧନ୍ୟ । କହିବ ସୁପତ ବଚନ ॥
ଶୁକ୍ଳବର୍ଣ୍ଣ ସାବିତ୍ରୀ ସତୀ । ସେହି ଅଚନ୍ତ୍ୟ ବିଷ୍ଣୁରୂପି ॥
ଉତ୍ପତ୍ତି ପ୍ରଳୟ କାରଣୀ । ସେହି ଭୂଲୋକ ବେହାରଣୀ ॥
ଦ୍ୱିଗୁଣ୍ୟ ପାଦେ ତା ଗମନ । ଅଷ୍ଟ ଅକ୍ଷରେ ତା ଭୁବନ ॥
ବିଷ୍ଣୁଲୋକେ ତାର ନିବାସ । ପଦ୍ମଧାନ ତା ଶୁକ୍ଳ ବାସ ॥
ସର୍ବଦା ନବଯୁବା ସେହି । ଗରୁଡ଼ ବାହନେ ବିଜୟୀ ॥
ସସର୍ବଦ ପର ଭଜଇ । ଅଷ୍ଟାକ୍ଷର ଧ୍ୟାନ କରଇ ॥

ସେହି ଅବଲାଟି ପରମ । ଶୂନ୍ୟରେ ହୋଇଛି ଗ୍ରନ୍ଥନ ॥
ସେ ଶୂନ୍ୟକୁ ଧ୍ୟାଇ ସାବତ୍ରୀ । ସେ ବସ୍ତୁ ବାଦନୀ ଅଟନ୍ତି ॥
ସାବତ୍ରୀ ନିର୍ଣ୍ଣୟ ଶୁଣିଲେ । ମନୁ ରାଜା ସନ୍ତୋଷ ହେଲେ ॥
ପୁଣି ଚୈତନ୍ୟକୁ ପଶ୍ନର । ମନ ଯେ ଭକ୍ତଭାବ କରି ॥
ସାବତ୍ରୀ ରୂପ କହିଦେଲ । କହ ରୂପ ସରସ୍ୱତୀର ॥
କି ବର୍ଣ୍ଣ କିରୂପ ବୟସ । ମନ ଶୁଣି ହେଉ ସନ୍ତୋଷ ॥
କେଉଁ ବସନ ପରିଧାନ । ତାହାର କିସ ଯେ ବାହନ ॥
କେଉଁ ଶୂନ୍ୟ ଧାରଣା ହୋଇ । କି ନାମ ବାଦନ କରଇ ॥
ଅଦ୍ୟ ପ୍ରାନ୍ତ କରଣ କହ । ହେ ଗୁରୁ ପରସନ୍ନ ହୁଅ ॥
ମନ ବଚନ ଶୁଣି ତହୁଁ । ଚୈତନ୍ୟ ଗଦଗଦ ହୋଇ ॥
ସରସ୍ୱତୀବର୍ଣ୍ଣକୁ କହି । ଅନନ୍ଦତରେ ଚତ୍ତ ଥୋଇ ॥
ସରସ୍ୱତୀଙ୍କ କୃଷ୍ଣ ବର୍ଣ୍ଣ । କୃଷ୍ଣ ବସ୍ତ୍ର ଯେ ପରିଧାନ ॥
କୃଷ୍ଣ ବାହନ ବୃଦ୍ଧ ରୂପ । ନିବାସ କରେ ରୁଦ୍ରଲୋକ ॥
ତ୍ରିମାତ୍ରା ଓଁକାର ଭଜନ । ପରମ ଶୂନ୍ୟକୁ ଧାରଣ ॥
ତେଣୁ କରି ଈଶ୍ୱର ନାମ । ନିରତେ କରଇ ବାଦନ ॥
ଗାୟତ୍ରୀ ଦେବୀ ଯେ ଉତ୍ପତ୍ତି । ପାଳଣ ରୂପୀ ଯେ ସାବତ୍ରୀ ॥
ପ୍ରଳୟ ରୂପି ସରସ୍ୱତୀ । ଏମନ୍ତେ ହୋଇଲା ଗାୟତ୍ରୀ ॥
ରକ୍ତ ବର୍ଣ୍ଣ ଗାୟତ୍ରୀ ଦେବୀ । ବାଲ୍ୟ ଅବସ୍ଥା ଅଟେ ସେହି ॥
ପ୍ରଥମେ ଅଜପା ଜପଇ । ପରମ ଶୂନ୍ୟକୁ ଯେ ଧ୍ୟାଇ ॥
ସାବତ୍ରୀ ଦେବୀ ଶୁକ୍ଳ ବର୍ଣ୍ଣ । ଯୁବା ବୟସ ତା ପ୍ରମାଣ ॥
ଦ୍ୱିତୀୟ ପାଦରେ ବର୍ଣ୍ଣଇ । ପଞ୍ଚମ ଶୂନ୍ୟକୁ ଯେ ଧ୍ୟାଇ ॥
ସରସ୍ୱତୀ ଯେ କୃଷ୍ଣ ବର୍ଣ୍ଣ । ବୃଦ୍ଧାଅବସ୍ଥା ତାର ଜାଣ ॥
ତୃତୀୟପାଦ ଯେ ଓଁକାର । ପରମଶୂନ୍ୟେ ଧ୍ୟାନ ଯାର ॥
ଏକ ଗାୟତ୍ରୀ ଯେ ତ୍ରିପାଦ । ତ୍ରିମାତ୍ରା ତ୍ରିବର୍ଣ୍ଣ ତ୍ରିବେଦ ॥
ତେଣୁ ସର୍ବେ ଗାୟତ୍ରୀ କହି । ସର୍ବେ ତ୍ରିବର୍ଣ୍ଣ ଏହି ଦେଖି ॥
ତ୍ରିପଦା ଚତୁର୍ବିଂଶ ଅକ୍ଷର । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ପୂର ॥

ଭୂଲୋକୁ ସତ୍ୟଲୋକ ଯାଏ । ବ୍ୟାହୃତି ବାରଷର ହୋଏ ॥
ପିଣ୍ଡ ବ୍ରହ୍ମାଣ୍ଡରେ ଯନ୍ତିତ । କହୁଛି ମନ ମୁହିଁ ସତ୍ୟ ॥
ବ୍ରହ୍ମାଣ୍ଡ ପ୍ରଣବ ଆକାର । ବ୍ୟାହୃତି ଭାବ ସ୍ଥିତ ସାର ॥
ଛଡ଼ଚଣ୍ଡ ଦଶ ଅକ୍ଷର । ଅଟେ ଚଉଦ ଭୁବନର ॥
ଦଶଦଗ ପ୍ରଣବ ହୋଇ । ଦଶଇନ୍ଦ୍ର ଏହୁ ବୋଲାଇ ॥
ଷାଠିଏ ଅକ୍ଷର ଗାୟତ୍ରୀ । ଶୁଣ ହୋ ମନ୍ତ୍ର ମହାପତି ॥
ଦ୍ୱାଦଶ ଅକ୍ଷର ବ୍ୟାହୃତି । ବେଦ ବଂଶ ତ୍ରିପଦା ଅଟନ୍ତି ॥
ଛଡ଼ ଅକ୍ଷର ଚତୁର୍ଦ୍ଦଶ । ପ୍ରଣବ ହୋଇଲା ଯେ ଦଶ ॥
ଏମନ୍ତେ ଷାଠିଏ ଅକ୍ଷର । ସେହୁ ଗାୟତ୍ରୀ ଦେବୀଙ୍କର ॥
ଯେ ରୂପେ ପ୍ରଣବ ଅଟଇ । ବ୍ରହ୍ମାଣ୍ଡ ଘୋଟିଣ ଅଛଇ ॥
ଏହୁ ବ୍ରହ୍ମାଣ୍ଡ ତିନଖଣ୍ଡ । ତ୍ରିଧାମ ଏ ଗାୟତ୍ରୀ ପିଣ୍ଡ ॥
ଗାୟତ୍ରୀ ସକଳ ଅଟଇ । ଗାୟତ୍ରୀ ଏ ସକଳ ଦେହି ॥
ସ୍ୱର ଅକ୍ଷର ଗାୟତ୍ରୀଙ୍କ । ସନ୍ଧ୍ୟା ସର୍ବ କାଳରେ ଜପ ॥
ଚୌଷଠିକ୍ଷର ଯେ ଜାଣଇ । ତାହାକୁ ପାପ ନ ଲାଗଇ ॥
ଗାୟତ୍ରୀ ଷାଠିଏ ଅକ୍ଷର । ଯେ ଜାଣେ ସେହି ବିପ୍ରବର ॥
ଚୌଷଠି ଅକ୍ଷର ଜାଣଇ । ବ୍ରାହ୍ମଣ ବ୍ରହ୍ମକୁ ଚାହଇ ॥
ଗାୟତ୍ରୀ ଯେ ବିପ୍ର ନ ଜାଣି । ସେ ଶୂଦ୍ର ସଙ୍ଗେ ପରମାଣି ॥
ତାହାକୁ ଦଣ୍ଡ ଯେ ପ୍ରମାଣ । ନ କରବାକ ଭୁଞ୍ଜ ମନ ॥
ଏବେ ଗାୟତ୍ରୀ ପଞ୍ଚମୁଖ । ପଞ୍ଚଦେବ ଲକ୍ଷଣ ଯାକ ॥
ତହିଁ ଅର୍ଥ ଖୋଜ କହିବା । ଆଦିଅନ୍ତ ଚହ୍ନାଇ ଦେବା ॥
ମସ୍ତକ ପ୍ରଥମ ଶିଖାଗ୍ରେ । ଦ୍ୱିତୀୟେ କର୍ଣ୍ଣଟି ବୋଲାଗ୍ରେ ॥
ତୃତୀୟେ ଟିରକୁ ଯେ କହ । ଚତୁର୍ଥ ନେତ୍ୟାନ୍ତ ଜାଣନ୍ତି ॥
ପଞ୍ଚମ ଶିର ତୋ ଦେହର । ହେ ମନ ଶରୀର ତୁ କର ॥
ପ୍ରଥମେ ପୂର୍ବଦଗ କହି । ଦ୍ୱିତୀୟେ ଦକ୍ଷିଣ ବୋଲାଇ ॥
ତୃତୀୟେ ପଶ୍ଚିମ ଯେ ପୁଣ । ଚତୁର୍ଥେ ଉତ୍ତର ତୁ ଜାଣ ॥
ପଞ୍ଚମେ ଆକାଶ ପ୍ରମାଣ । ଷଷ୍ଠମେ ଧରଣୀ ତୁ ଜାଣ ॥

ଏ ଅଷ୍ଟ ଗାୟତ୍ରୀ ବୋଲଇ । ଷଡ଼ମୁଖୀ ବୋଲଏ ଏହି ॥
ପିଣ୍ଡ ବ୍ରହ୍ମାଣ୍ଡକୁ ଏକତ୍ର । କରିବୁ ବୁଝାଇ ଅଛି ଅର୍ଥ ॥
ଦଶ ଚକ୍ଷୁ ଦଶଦଗହିଁ । ଏ ଦଶ ଗୋଟ ଯେ ଅଟଇ ॥
ପଞ୍ଚ ଭୂତ ପଞ୍ଚଜିହ୍ୱାହି । ପଞ୍ଚବେଦ ବଦନ ହୋଇ ॥
ନିରାଜ ଅଣାକାର ବ୍ରହ୍ମ । ତାହାଙ୍କୁ ପରଛି ପରମ ॥
ଆକାର ଯାହାଙ୍କୁ ବୋଲନ୍ତି । ସେ ବୀଜୁ ହୋଇଛି ଉତ୍ପତ୍ତି ॥
ଇଚ୍ଛାଁଶକ୍ତି ବୋଲଏ ସେହି । ଉକାର ମାତ୍ରା ଅଟେ ଯେହି ॥
ପରମ ସ୍ୱୟଂ ପରଥାଇ । ଶକ୍ତି ସ୍ୱରୂପ ଏଣୁ ହୋଇ ॥
ଏ ସମସ୍ତ ସ୍ଥୂଳ ଶରୀର । ଜନ୍ମ ଶକ୍ତି ଏମାନଙ୍କର ॥
ଭୂଲୋକ ଭୁବଲୋକ ସ୍ୱର୍ଗ । ତ୍ରିପଦା ତିନି ଯେ ବିଭାଗ ॥
ଅକାର ଉକାର ମକାର । ତ୍ରିମାତ୍ରା ଏ ଗାୟତ୍ରୀଙ୍କର ॥
ତିନି ଚରଣ ଗାୟତ୍ରୀଙ୍କ । ବଇଠି ସାକ୍ଷ ଏ ତିନିଙ୍କ ॥
ଗୋତ୍ର ଯେ ହୋଇଣ ଅଛଇ । କୌଣ୍ଡିନ୍ୟ ପ୍ରବର ବୋଲାଇ ॥
ସର୍ବ ଗୋତ୍ରବର୍ତ୍ତୀ ଅଛନ୍ତି । ଯେ ବାକ୍ୟ ବେଦରେ ବୋଲନ୍ତି
ଶୁକ୍ଳାମ୍ବର ରୂପ ନିର୍ମଳ । ଯେ ବ୍ରହ୍ମ ପତ୍ନୀୟ ଶରୀର ॥
ସେ ଜ୍ୟୋତିର୍ମୟ ପୁରୁଷହିଁ । ଗାୟତ୍ରୀଙ୍କ ବେଷ୍ଟିତ ହୋଇ ॥
ଓଁକାର ମାତ୍ରା ବିଷ୍ଣୁ ପାଦ । ମଧ୍ୟ ସାବିତ୍ରୀ ଦେବ ଭେଦ ॥
ତେଣୁ ବିଷ୍ଣୁ ହୃଦୟ ସେହି । ଯେ ବୁଦ୍ଧଜନେ ଛନ୍ତି କହି ॥
ଅକାର ମାତ୍ରା ଯେ ଗାୟତ୍ରୀ । ପ୍ରଥମପାଠ ଯେ ବୋଲନ୍ତି ॥
ସେ ମାତ୍ରା ଓଁକାର ମାତ୍ରାହିଁ । ବଇଠି ଓଁକାରକୁ ଦେହି ॥
ଏ ତିନିମାତ୍ରା ଯେ ବଇଠି । ତହିଁର ଉପରେ ବିନ୍ଦୁଟି ॥
ସେ ବିନ୍ଦୁ ପାଦ ନିଶିବାରେ । ଋଗ୍ବେଦ ଗୁରୁ ପାଦରେ ॥
ଅକାର ମାତ୍ରାଟି ଗାୟତ୍ରୀ । ପ୍ରଥମେ ଯଜୁର୍ବେଦ ଖ୍ୟାତି ॥
ଉକାର ମାତ୍ରା ସାମବେଦ । ବୋଲାଇଲା ଦ୍ୱିତୀୟ ପାଦ ॥
ମକାର ତୃତୀୟ ଯେ ପାଦ । ସେହି ଅଟଇ ଋକବେଦ ॥
ଚତୁର୍ଥେ ବିନ୍ଦୁପାଦ ସାର । ସେହି ଅଥର୍ବ ବେଦ ପୂର ॥

ତହିଁ ଉପରେ ଧ୍ୱନି ଶବ୍ଦ । ସେହି ବୋଲାଏ ଟିଶୁବେଦ ॥
ଏରୂପେ ହୋଇ ପଞ୍ଚବେଦ । କହିଦେଲି ଗାୟତ୍ରୀ ଭେଦ ॥
ହେ ମନ ସାବିତ୍ରୀ ମଧ୍ୟାହ୍ନ । ଗାୟତ୍ରୀ କାଳ ପ୍ରାତ ଜାଣ ॥
ସରସ୍ୱତୀ ସାୟଂ କାଳତ । ସନ୍ଧ୍ୟାର ସନ୍ଧିଟି ଚତୁର୍ଥ ॥
ପ୍ରାତଃକାଳୁ ସର୍ବ ଦଣ୍ଡକେ । ଦିବସ ଦଣ୍ଡେ ଯେ ପ୍ରତ୍ୟକ୍ଷେ ॥
ଦିବସ ଚତୁର୍ଦ୍ଦଣ୍ଡ ସରେ । ଏ ଷୋଳଦଣ୍ଡ ସନ୍ଧ୍ୟା ଏତେ ॥
ସାୟାହ୍ନ ଦଣ୍ଡକ ଯେ ପାଏ । ସୂର୍ଯ୍ୟ ସର୍ବ ଦଣ୍ଡକ ଯାଏ ॥
ଏହୁ ଅଟଇ ସନ୍ଧ୍ୟାକାଳ । ଏମନ୍ତେ ତ୍ରିସନ୍ଧ୍ୟା ତ୍ରିକାଳ ॥
ଶୁଣ ହୋ ମନୁ ମହୀପତି । ଚୈତନ୍ୟ ଦେବଙ୍କ ବଦତି ॥
ସର୍ବକାଳ ଯେ ମହାବ୍ରହ୍ମ । ଅଗ୍ରବ ବୋଲି ତାକୁ ଜାଣ ॥
ଆଦିତ୍ୟ ଚନ୍ଦ୍ର ତାର ଜ୍ୟୋତି । ଅନଳଚର ଏ ବୋଲନ୍ତି ॥
ଗାୟତ୍ରୀ ସ୍ଥୂଳରୂପ ହୋଇ । ଦିବସ ଭାଗ ଅଟେ ସେହି ॥
ତିନିକାଳେ ତିନିରୂପହି । ଏଣୁ ନିତ୍ୟତନୁକୁ ବହି ॥
ସରସ୍ୱତୀ ସାବିତ୍ରୀ ଗାୟତ୍ରୀ । ରକ୍ତ ଶୁକ୍ଳ କୁଙ୍କୁମ ଜ୍ୟୋତି ॥
ତିନିରୂପ ତିନି ଯେ ବର୍ଣ୍ଣ । ତିନିରୂପ ତିନି ଯେ ଧାମ ॥
ତିନିମାତ୍ରା ଯେ ହୋଇଛନ୍ତି । ଶୁଣ ହୋ ମନୁ ମହୀପତି ॥
ବାରତିଥି ସୂର୍ଯ୍ୟ ହୋଇଣ । ଚନ୍ଦ୍ର ତାର ଯୋଗ କରଣ ॥
ଅଂଶମାନ ଘେନିଣ ଜନ୍ମ । ନିର୍ବିଧରେ ଯେ ହୋଇ ପୂର୍ଣ୍ଣ ॥
ଏଣୁ ସପ୍ତବ୍ରହ୍ମାଣ୍ଡ ହେଲା । ପ୍ରଣବ ଆକାର ହୋଇଲା ॥
ଏଠାରୁ ସର୍ବେ ବ୍ୟକ୍ତ ହୋଇ । ହେବାରୁ ନିକଳ୍ପ ବୋଲଇ ॥
ତ୍ରିମାତ୍ରାପରେ ବିନ୍ଦୁ ହ୍ରଦ । ସ୍ୱରମାତ୍ରା ଯେ ସ୍ୱରପାଦ ॥
ସେ ଧ୍ୱନିରେ ବିନ୍ଦୁ ସଂଯୁକ୍ତ । ହେବାରୁ ଜୀବ ହେଲା ଜାତ ॥
ଏ ପଞ୍ଚତତ୍ତ୍ୱ ଗାୟତ୍ରୀହିଁ । ରୂପ ନିର୍ଣ୍ଣୟ କହିଲଇଁ ॥
ଏ ପଞ୍ଚପ୍ରାଣ ପଞ୍ଚଭୂତ । ବ୍ରହ୍ମାଣ୍ଡ କରୁଅଛି ଜାତ ॥
ଗାୟତ୍ରୀ ପରେ ଜ୍ୟୋତି ରୂପ । ତା ପରେ ଓଁକାର ବଦିତ ॥
ଓଁକାର ପରେ ପରିପୂର୍ଣ୍ଣ । ବ୍ରହ୍ମ ରୂପ ଯେ ସୂକ୍ଷ୍ମ ବ୍ରହ୍ମ ॥

ସେ ସୂକ୍ଷ୍ମ ବ୍ରହ୍ମ ଶମୂତହିଁ । ତା ପରେ କିଛି ଅଉ ନାହିଁ ॥
ଅପକୁ ଅପ ଯେ ନିର୍ମାଇଁ । ତାକୁ ଯେ କେ ଗଢ଼ି ପାରଇ ॥
ସକଳ ଶରୀରେ ଏକଇ । ସେ ସାକ୍ଷୀ ରୂପେ ବସିଥାଇ ॥
ଅଗୋଚର ଗୋଚର ନୋହି । ସେ ସବୁକୁ ଯେ ଦେଖୁଥାଇ ॥
ଖଟାଇ ଉବାଣ୍ଡିବେ ନାବ । ପାରି କରେ ଦେଖିଲା ଭାବ ॥
ନଉକା ମଙ୍ଗେ ବଜେ କର । ହସ୍ତରେ କେଲୁଅର ଧର ॥
ଭାବ ବୁଝିପାରି କରଇ । ତେଣୁ ନାମଟି ଭାବଗ୍ରାହୀ ॥
ଭାବ କରିବା ପାଇଁ ସେହି । ଭବରେ ଜନମ ହୁଅଇ ॥
ଯେ ମତେ ଯେ ଭାବ ଲଗାଇ । ସେ ତେତେମତେ ଧରି ଥାଇ ॥
ଭାବକୁ ନିକଟରେ ଥାଇ । ଅଭାବେ ଖୋଜିଲେ ନ ପାଇ ॥
ଘଟେ ଘଟେ ବସି ବେହାର । ନାହିଁ ତାହାର ପରାପର ॥
ବଇଠୀ ଛପନା ଛନ୍ଦରେ । ଛନ୍ଦଛି ଏ ବେଳ ପଦ୍ମରେ ॥
ସେ ପୂର୍ଣ୍ଣବ୍ରହ୍ମ ରୂପେ ପୂରି । ଯେ ପୂର୍ଣ୍ଣାନନ୍ଦମୟ ହରି ॥
କଦମ୍ବମୂଳେ ବଜେ ଯେଣୁ । ଭାବେ ଯେ ବାଜୁଥାଏ ବେଣୁ ॥
ଭାବେ ଉଚ୍ଛିଷ୍ଟ ଶବରୀର । ଖାଇଣ ନେଲା ନିଜ ପୁର ॥
ଭାବରେ ଭକତ ମାଇଲା । ତା ନାତ ହୃଦରେ ବହିଲା ॥
ବ୍ରାହ୍ମଣ ଚରୁଅନ୍ନ ଦେଲେ । ବ୍ରଜବାସୀ ସେ ବୋଲାଇଲେ ॥
ଭାବେ ଗୋପକନ୍ୟା ତରିଲେ । ପୂର୍ବେ ସେ ଋଷି ହୋଇଥିଲେ ॥
ଭାବରେ ଭକତର ଭାର । ବହି ଅଚ୍ଛନ୍ତି ଚକ୍ରଧର ।୧୮୪।
ଭାବ ତାହାର ମୂଳଧନ । ଭାବରେ ଶଙ୍ଖଚକ୍ର ଚିହ୍ନ ॥
ଭାବରେ ଯଶୋଦା ବାନ୍ଧିଲେ । ଗୁଣ୍ଠରେ ପେଞ୍ଜି ପକାଇଲେ ॥
ଭାବରେ ମୃତ୍ତିକା ଭକ୍ଷଣ । ଉଦରେ ସପତ ଭୁବନ ॥
ଭାବରେ ହସ୍ତିନାକୁ ଯାଇ । ପଣ୍ଡା ମାଗିଣ ମାଡ଼ ଖାଇ ॥
ଭାବରେ ବିଦୁରର ଅନ୍ନ । ଖାଇଲେ ଶ୍ରୀ ପୁରୁଷୋତ୍ତମ ॥
ଭାବେ ଗୋପୀ ଚରଣ ଧୂଳି । ଅଙ୍ଗରେ ହୋଇଥାନ୍ତି ବୋଳି ॥
ଭାବେ ଅଧମ୍ବ ସୁଧା ପିଇ । ଭାବ ତା ମୂଳଧନ ହୋଇ ॥

ଭାବରେ ଜନକ ପିଅର | ଛାଡ଼ ମଥୁରାରେ ବେହାର ||
ଭାବାମୃତ ରସକୁ ପାଇ | ଲୀଳା କରେ ଗୋପରେ ଯାଇ ||
ଭାବେ ଷୋଳସହସ୍ର ଗୋପୀ | ମୋହିଲ୍ଲ ସେ ଗୋବିନ୍ଦ ରୂପି ||
ଭାବରେ ମଦନ ମୋହନ | କଲ୍ଲ ରହାସ ବୃନ୍ଦାବନ ||
ଭାବରେ ଗୋପୀନାଥ ହୋଇ | ଗୋପୀଙ୍କି ପାଳିବାର ପାଇଁ ||
ଭାବେ ଗୋବର୍ଦ୍ଧନ ତୋଳଣ | କରେ ଧଇଲେ ସାତଦିନ ||
ହେ ମନ ବୋଲକର ମୋର | ଭାବକୁ ଅଶ୍ରୟ ତୁ କର ||
ଭାବ ଆଶ୍ରେକଲେ ଭକତ | ଭାବରୁ ହୋଇବୁ ମୁକତ ||
ମୁକତ ଗତି କି ପାଇବୁ | ଶ୍ରୀକୃଷ୍ଣ ଅଙ୍ଗେ ଲୀନ ହେବୁ ||
ସତ୍ୟ ଏ ଶ୍ରୀମୁଖ ବଚନ | ସାଧୁ ସଙ୍ଗକର ହୋ ମନ ||
ସାଧୁ ସଙ୍ଗେମେ ଲଭେ ଜ୍ଞାନ | ଛୁଡ଼ିବ ଏ କର୍ମ ବନ୍ଧନ ||
ବିଷ୍ଣୁର ପାଦେ ହେବୁ ଲୀନ | କାଟିଲେ ଏ କର୍ମ ବନ୍ଧନ ||
ବିଷ୍ଣୁ ମାୟା ଗୋଟି ବ୍ୟାପିଛି | ବ୍ରହ୍ମାଣ୍ଡ ଅନ୍ଧାର ଦିଶୁଛି ||
ଅନ୍ଧାରେ ବୁଡ଼ ତୁ ନ ମର | ଅଶ୍ରୟ ଭାବକୁ ତୁ କର ||
ଭବ ଏକାମନକୁ ନାଶ | ନାମରେ କର ତୁ ବିଶ୍ୱାସ ||
ନାମଟିକ୍କ ପରମ ଧାମ | ନିଶ୍ଚୟ କରିବୁ ବିଶ୍ରାମ ||
ଆଦ୍ୟ ଅଛଇ ରାଧାନାମ | ପଛେ ଅଛଇ କୃଷ୍ଣନାମ ||
ହେ ମନ ମୋର ବୋଲକର | ହେତୁ ତୋହର ହୃଦେ ଧର ||
ହେ ରାଧା କୃଷ୍ଣ ଭବବାଧା | ଦୂର ହୋଇବ ତୃଷା କ୍ଷୁଧା ||
ଶବ୍ଦାବଲ୍ୟରେ ସୁଧା ପିଇ | ତ୍ରିତାପ ନାଶ ସେ ଯେ ହୋଇ ||
ନାମ ରଟିଲେ ଯମବାସ | ନ ଲାଗିବ ଯେ କାଳପାଶ ||
ଦୁର୍ଲ୍ଲଭ ମନୁଷ୍ୟ ଜନମ | ପାଇ କି ଧାଇଁ ହେଉ ଭ୍ରମ ||
ଏ ସୁଲଭ ଜନ୍ମ ଆଉ କି | ପାଇବୁ ଏମନ୍ତ ଭାବୁ କି ||
ସ୍ୱାର୍ଥ ଜୀବନକୁ ବ୍ୟର୍ଥ | ନ କର ଦୂରେ ହର ପଥ ||
ଭଜନ କହୁଅଛି ମୁହିଁ | ବାର ବାର କର ଚେତାଇ ||
ଶ୍ରୀ ଗୁରୁ ଚରଣରେ ଖଟ | ଗୁରୁ କୃଷ୍ଣ ବୈଷ୍ଣବ ଏକ ||

ଚନ୍ତ୍ରାଇ କହୁଅଛି ତୋତେ । କଳି ଯୁଗେ ବୈଷ୍ଣବ ମତେ ॥
ହରି ଖେଳନ୍ତି ଏ ଜଗତେ । ବୈଷ୍ଣବ ଧର୍ମଟୀ ସାକ୍ଷାତେ ॥
ବୈଷ୍ଣବ ପରମ ଯେ ତପ । ସୁମନ ଗୁରୁମନ୍ତ୍ର ଜପ ॥
ବୈଷ୍ଣବ ପରମ ପବନ । ବିଷ୍ଣୁ ସ୍ୱରୂପ ସେ ସାକ୍ଷାତ ॥
ପାପିଙ୍କି ତାରିବା ନିମନ୍ତେ । ତୀର୍ଥର ସର୍ବଏ ଜଗତେ ॥
ବୁଲନ୍ତି ବଇଷ୍ଣବ ହୋଇ । ଭଜ ବୈଷ୍ଣବ ମନ ଶୁଦ୍ଧ ॥
ପୂଜ ବୈଷ୍ଣବ ପାଦ ଯୁଗେ । ଉଦ୍ଧାର ହୋଇବୁ ଯେ ବାଗେ ॥
ବୈଷ୍ଣବ ବିଷ୍ଣୁ ଯେ ଭଜନ୍ତି । ବୈଷ୍ଣବ ଶ୍ରେଷ୍ଠ ସେ ଅଟନ୍ତି ॥
ବୈଷ୍ଣବ ଦେଖି ଯେହୁ ମାନ୍ୟ । ନ କରେ ଧିକ ତା ଜୀବନ ॥
ବୈଷ୍ଣବ ଦେଖି ଜାତିପୁଛି । ତା ଠାରୁ ଅଜ୍ଞାନ କେ ଅଛି ॥
ବୈଷ୍ଣବ ନିନ୍ଦା ଯେ କରଇ । ଜଗତେ ପତିତଟି ସେହୁ ॥
ଶତେ ଜନ୍ମ ଯାଏ ଘୁଷୁରି । ନର୍କରେ ନିବାସ ତାହାର ॥
ବୈଷ୍ଣବ ଉଚ୍ଛିଷ୍ଟ ଭୋଜନ । ନ ଭକ୍ଷେ କୈବଲ୍ୟ କାରଣ ॥
ସେ ଅବା କେମନ୍ତେ ହରିଙ୍କୁ । ପାଇବ ନ ଆସେ ମନକୁ ॥
ବୈଷ୍ଣବ ଗୋଷ୍ଠିରେ ଯେ ସେହୁ । କେବେହେଁ ବସି ଯିବେ ନାହିଁ ॥
ସବୁ ତାହାର ଅକାରଣ । ଯେତେ ତୀର୍ଥ ବ୍ରତ ଭ୍ରମଣ ॥
କେବଳ ଶ୍ରମ ମାତ୍ର ସାର । ନ ମିଳେ ମୁକତିର ଦ୍ୱାର ॥
ବୈଷ୍ଣବ ଦେଖି ଯେ ଚରଣ । ଧୂଳକୁ ନ ବୋଳେ ଶିରେଣ ॥
ମାଳ ଝୁଲି ଧରଣ ମୁଣ୍ଡେ । ସେ ନ ପଡ଼ଇ ଯମଦଣ୍ଡେ ॥
ବୈଷ୍ଣବ ଚରଣେ ଯେ ସେବା । ନ କରେ ପଶୁରେ ଲେଖିବା ॥
ଯେତେହେଁ ଜ୍ଞାନଧ୍ୟାନ କଲେ । ଧର୍ମଶାଖା ନୁହଇ ଭଲେ ॥
ବୈଷ୍ଣବ ପରମ ପବନ । ସାର ଉଦ୍ଧାରଣ ପଦାର୍ଥ ॥
ଯେ ଜୀବ ହୋଇବ ଉଦ୍ଧାର । ଭଜ ତୁ ବୈଷ୍ଣବ ପୟୂର ॥
ବୈଷ୍ଣବ ବିଷ୍ଣୁ ଟି ସାକ୍ଷାତେ । ହେ ମନ ନ କର ଅପ୍ରତେ ॥
ସତ୍ୟ ଏ ଶ୍ରୀମୁଖ ବଚନ । ବୁଝ ପୁରାତନ ଶାସ୍ତ୍ରେଣ ॥
ବୈଷ୍ଣବଙ୍କର ଗୁଣ ଦୋଷ । ନ ପୁଚ୍ଛିବୁ ତୁ ଜାତି ଗୋତ୍ର ॥

ବୈଷ୍ଣବଧର୍ମ ଅଶେଷ କର । ଉଦ୍ଧାର ପଥ ଏହୁ ସାର ॥
ଚତୁର୍ଥକାଳ ଯେ ଅସିଣ । ହୋଇଲା ଭଜ ନିଜନାମ ॥
ବେଳ ବୁଡ଼ିଗଲେ ଅନ୍ଧାର । ଜଗତ ହେବ ତମ ଘୋର ॥
ସେକାଳ ଲେଉଟିଲେ ନ ପାଇ । କଲବଲ ହୋଇବୁ ତୁଦ୍ଧ ॥
ବେଳ ଥାଉଁ ଗୋବିନ୍ଦ । ଚରଣୁ ପିଅ ମକରନ୍ଦ ॥
ତଣ ରୁ ଚରଣେ ଶରଣ । ହେ ଧନ ଦାର ସୁତ ପ୍ରାଣ ॥
ଏ ସବୁ କୃଷ୍ଣେ ସମର୍ପଣ । ଅବର ଏହୁ ତନମନ ॥
ଉଦାସମତେ ରଖ କାୟା । ନାମ ଭଜନେ ଜୀବ ମାୟା ॥
ନାମ ବ୍ରହ୍ମ ବନ୍ଧୁ ଧାରଣ । ସାହା ନୋହିବ କେ ମରଣ ॥
କାଳକୁ ଟେକ ଅବା ସମର୍ଥ । ଏକା ନାମ ବ୍ରହ୍ମ ଜଗତ ॥
ଘଟେ ଘଟେ ଅଛଇ ପୂରି । ନୀଳଗିରିରେ ବିଜେକରି ॥
ଅଛି ଚତୁର୍ଦ୍ଧାରୂପ ଧରି । ଶଙ୍ଖ ଚକ୍ର ଗଦା କମଳୀ ॥
ସହସ୍ର ଦଳ କମଳର । ଅଷ୍ଟରତ୍ନମୟ ବେଦୀର ॥
ବେଦର କି ଉପମା ଦେବା । ଚନ୍ଦ୍ରାମଣି ଅଛାଦ ଅଭ୍ର ॥
ଝଟ ଝଟ ଝଟକୁଥାଇ । ଜାକୁଲ ଜ୍ୟୋତି ବିରାଜଇ ॥
ଝଲମଲ ହୋଇ ନୟନେ । ଦକ୍ଷିଣ ଶ୍ରୀଅଙ୍ଗେ ଶୋଭିବନେ ॥
କଳାଶ୍ରୀ କୁସୁମର ପ୍ରାୟେ । ମନ ରଖ ସୁଦୀପ୍ତ ହୋଏ ॥
କଳାମେଘେ ଯେହ୍ନେ ବିଜୁଳୀ । ଖସଇ କିବା ଅଦ୍ରି ।ବାନୀ ॥
ସେ ପ୍ରାୟେ କାନ୍ତି ବିରାଜଇ । ଜ୍ୟୋତି ବିଜୟ କରି ତହିଁ ।
ଭକତଭାବେ ଭେଟପାଇ । ଅଭାବ ଦେଖି ଭେଟ ନାହିଁ ॥
ସେ ନାରାୟଣ ଚନ୍ଦ୍ରବର୍ଣ୍ଣି । କହିଲ ଚିହ୍ନ ଭଜ ମନ ॥
ସଦଗୁରୁକୁ ସେବାକଲେ । ରୂପ ଦର୍ଶନ ମିଳେ ଭଲେ ॥
ଦୁଇଶ ଛବିଶ ଯେ ପଦ । ସପ୍ତମ ଅଧ୍ୟାୟ ପ୍ରବନ୍ଧ ॥
ଶ୍ରୀମନ୍ତ ଗୁରୁପାଦ ଧ୍ୟାୟି । ବିପ୍ର ମଦନ ଦାସ କହି ।୧୨୭।

ଇତି ଶ୍ରୀ ନିଗମଗୀତା ଯୋଗଶାସ୍ତ୍ରେ ବ୍ରହ୍ମବିଦ୍ୟାୟାଂ ମନ ଚୈତନ୍ୟ ସମ୍ବାଦେ ଗାୟତ୍ରୀ ନିର୍ଣ୍ଣୟ କଥନେ ନାମ ସପ୍ତମୋଽଧ୍ୟାୟଃ ।

# ଅଷ୍ଟମ ଅଧ୍ୟାୟ ।

## ଶ୍ଳୋକଃ ।

ଶ୍ରୀ ଚୈତନ୍ୟ ନମସ୍ତୁଭ୍ୟଂ ମୋକ୍ଷମାର୍ଗ ଭବାର୍ଣ୍ଣବ ।
ଶୃଣ୍ୱନ୍ତୁ ମୁନୟଃ ସର୍ବେ ଭବଶ୍ଚ ପୁରୁଷୋ ବଦେତ୍ ॥

## ଗୀତ ।

ମନ ପଦ୍ମରେ ଗୁରୁଦେବ । କରଣ ନମସ୍କାର ସ୍ତବ ॥
ମୋକ୍ଷ ମାର୍ଗ ଭବାର୍ଣ୍ଣବର । ତୁମ୍ଭେ ଯେ ଧର୍ମ ଅବତାର ॥
ସକଳ ଘଟେ ଗୁରୁ ହୋଇ । ବିଜୟ କରଅଛୁ ତୁହି ॥
ଜ୍ଞାନ କର୍ମ ବିବିଧ ଭକ୍ତି । ଯାଚଣ ଦେଉଅଛ ମୁକ୍ତି ॥
ଗୁରୁ ବୋଲି ଯେ ଦ୍ୱିଅକ୍ଷର । ନିଜ ନାମ ଅଟେ ତୁମ୍ଭର ॥
ନାମ ବ୍ରହ୍ମରୂପେ ବିଦିତ । ନିଷ୍କାମ ତୁମ୍ଭ ଧର୍ମ ମତ ॥
ତୁ ଶୀଘ୍ର ବୋଇଲେ ଗୁଣରୁ । ବାହାର ହୁଅ ଶବଦରୁ ॥
ଏରୂପ ଗୁଣ ତୁମ୍ଭଠାରେ । ନାହିଁ ନିର୍ଗୁଣ ଅଚ୍ୟୁତରେ ॥
ଅଲେଖ ଲେଖ ପୁରୁଷର । ଅବାୟୁ ମଣ୍ଡଳେ ତୋ ଘର ॥
ପାଦପାଣି ମୁଖ ବେମର । ନଖ ଚର୍ମ ନାହିଁ ତୋହର ॥
ଅବନା ଅରୂପା ଅଜପା । ଅନନ୍ତ ନାମ ତୋ ଅମପା ॥
ଅନ୍ତ ନ ପାଇ ମୁନିଜନ । ଭ୍ରମୁଅଛନ୍ତି ତ୍ରିଭୁବନ ॥
ମୁଁ ତୁମ୍ଭ ଚରଣେ ଶରଣ । ପଶୁଛି କର ପରିତ୍ରାଣ ॥
ନୀଳଗିରିଶିଖେ ଶରଣ । ପଞ୍ଚର ବାନା ଉଡ଼ାଇଣ ॥
ଚରଣେ ଶରଣ ମୁଁ ଭବେ । ଅଶରଣ ହୋଇବ ଯେବେ ॥
ପତିତପାବନ ବାନାକୁ । ଜଗତ ଜନ ନିନ୍ଦିବାକୁ ॥
ମୋର ପ୍ରଭୁଙ୍କୁ ନିନ୍ଦାହେବ । ବୋଲି ଭାବୁଛି ମୂଢ଼ ଜୀବ ॥
ମରିବା ଜୀଇବା ଏ ଦୁଇ । କଥାକୁ ମୋ ଶୋଚନା ନାହିଁ ॥
ତୁମ୍ଭ ମହିମା ତୁମ୍ଭେ ରଖ । ମୋ ଗ୍ଲର ଅଛଇ ନିରେଖ ॥

ଅର୍ଚ୍ଚନ ବନ୍ଦନ ସ୍ମରଣ । କିଛି ନ ଜାଣେ ନିସ୍ୱଜନ ॥
କୃପାସିନ୍ଧୁ ହେ କୃପାକର । ପଦ ସ୍ପୃଶୁ ମୋର ହୃଦର ॥
ଏ ନିଗମଗୀତା କବିତ୍ୱ । ତୋ ପ୍ରସନ୍ନେ ହୋଇବ ଯୁକ୍ତ ॥
କି ସ୍ୱତେ କରୁଣା ହୋଇଲେ । କି ଛି ତୋର ରସ ଗାଇଲେ ॥
ଭକ୍ତଜନମାନେ ପିଇବେ । ଯେମନ୍ତ ସନ୍ତୋଷ ଲଭିବେ ॥
ଏହୁ ମାଗୁଣି ଯେ ମୋହର । କିଛି ନ ମାଗେ ଶ୍ରୀସୁମୂର ॥
ଐଶ୍ୱର୍ଯ୍ୟ ଧନ ଦାସ ପୁତ୍ର । ନ ମାଗେ ଗତି ମୁକ୍ତିପଥ ॥
କାହିଁ ମୋହର କାର୍ଯ୍ୟ ନାହିଁ । ଦିନ ଯାଉ ତୋ ନାମ ଗାଇ ॥
ତୋହର ନାମ ଶୁଣୁଥିବ । ତୋହର ନାମ ଜଛାଇବ ॥
ତୋ ନାମ ସୁଧାରସ ପିଇ । ବ୍ରହ୍ମାଣ୍ଡେ ବୁଲୁଥିବ ମୁହିଁ ॥
ଖଳ ଲୋକମାନେ ନିନ୍ଦିଲେ । ନିନ୍ଦା ସ୍ତୁତିରେ ନାହିଁ ଭୁଲେ ॥
ତୋ ନାମ ପ୍ରେମାମୃତ ଖାଇ । ଗର୍ବେଶ୍ୱର ହୋଇଛି ମୁହିଁ ॥
କେବଳ ଏହୁ ଆଜ୍ଞା ହେଉ । ଯେବେ ମୋ ଇଚ୍ଛା ମହାବାହୁ ॥
ଶ୍ରୀମୁଖ ଦର୍ଶନ ମିଳିବ । ସଖାମାନଙ୍କ ହୋଇଥିବ ॥
ମୋକଣ୍ଠେ ଅସି କର ଖେଳା । କର ଅଙ୍ଗେ ପଙ୍କଜଦୋଳା ॥
ତୋ ନାମ ଯଶ ଲେଖୁଥିବ । ପଦ୍ମପାଦରେ ଥିବ ସେବ ॥
କହିଲ ଗାୟତ୍ରୀ ନିର୍ଣ୍ଣୟ । ବସନ୍ତ ନିର୍ଣ୍ଣୟକୁ କହ ॥
ବସନ୍ତ ପୁରୁଷ ନିର୍ଣ୍ଣୟ । ଶୁଣିଣ ତୋଷ ହେବ ଦେହ ॥
ବସନ୍ତ ପୁରୁଷ କେମନ୍ତ । ଜବର୍ଣ୍ଣି ଚିହ୍ନ ତା ବୃତ୍ତାନ୍ତ ॥
ବସନ୍ତ କେମନ୍ତ ପ୍ରକାର । ମୋ ଅଗେ ପ୍ରକାଶ ଯେ କର ॥
ପାଦପାଣି କେତେ ଶ୍ରବଣ । ନାସାକଣ୍ଠି ଅଛି ନୟନ ॥
କେଉଁଠାରେ ଥାଇ କି କାର୍ଯ୍ୟ । କହଇ ତାର କହ ପୂର୍ଣ୍ଣ ॥
କାରୁପେ ସଂସାର ବେହାର । ଚହ୍ଲାଇ ଦେବ ମୋ ଅଗର ॥
ପିଣ୍ଡ ବ୍ରହ୍ମାଣ୍ଡରେ ବୁଝାଇ । କହିବ ହସ୍ତମାର ଦେଇ ॥
ମନ ବକଲେ ଚଇତନ । ପଦ୍ମପାଦେ ଚିତ୍ତ ଦେଇଣ ॥
ବସନ୍ତ ପୁରୁଷ ମହିମା । କହନ୍ତୁ ପୁଲକିତ ପ୍ରେମା ॥

ବୋଲନ୍ତି ଶୁଣ ଆହେ ମନ । ବିରାଟ ପୁରୁଷର ବର୍ଣ୍ଣ ॥
ତୋ ଆଗେ କହୁ ଏ ଚରିତ । ମୁଁ ଏବେ ହୋଇବି ପତିତ ॥
ତୁ ଯିନା ପରୀକ୍ଷ ପାରିବୁ । ଗୁପତ ସନ୍ଧି ଯିନା ବାରୁ ॥
ପଦ ଶୁଣି ଅର୍ଥ ପରୀକ୍ଷ । ତୁ ଶୁଦ୍ଧ ଚେତା ଦଣ୍ଡଧାରୀ ॥
ଶୁଣ ହେ ମନ ସାବଧାନ । ଗୁପତ ଗୁରୁଙ୍କର ଜ୍ଞାନ ।୫୦।
କା ଆଗେ ନ କର ବଖାଣ । ଛୁଇଁଥା ମୋହର ଚରଣ ॥
ଶୁଣି ମନ ହେଲା କୃତାର୍ଥ । ପାଦଛୁଇଁଣ କର ସତ୍ୟ ॥
ଚୈତନ୍ୟ ହୋଇଣ ପ୍ରସନ୍ନ । କହନ୍ତି ବିରାଟ ବର୍ଣ୍ଣନ ॥
ଏହି ବ୍ରହ୍ମାଣ୍ଡଟି ପ୍ରଣବ । ଜାଣ ଶରୀର ଏହି ଜୀବ ॥
ଏ ଦେହେ ସପତ ବ୍ୟାହୃତି । ପ୍ରବର୍ତ୍ତୀ ହୋଇଣ ଅଛନ୍ତି ॥
ପିଣ୍ଡ ବ୍ରହ୍ମାଣ୍ଡେ ବିଭାଗେହିଁ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ କହି ॥
ବିରାଟ ପୁରୁଷ ବୋଲାଇ । କହୁଛି ଶୁଣ ନରସାଇଁ ॥
ତୁ ଅବା ବୋଲିବୁ କେମନ୍ତେ । ମନକୁ ନ ଆସେ ମୋ ପ୍ରତେ ॥
ବୁଝାଇ କହ ଆଦ୍ୟ ପ୍ରାନ୍ତେ । ଯାହା ହୋଇଛି ମନୁଶାସ୍ତ୍ରେ ॥
ପାତାଳ ସ୍ୱର୍ଗ ଆଉ ମର୍ତ୍ତ୍ୟ । ମଧ୍ୟରେ ମେରୁ ହୋଇ ସ୍ଥିତ ।୬୦
ସେ ମେରୁ ଉନ୍ନପୁର ଧର । କଟୀ ମେଖଳା ପୃଥ୍ୱୀ ପୂର ॥
ସେଠାରୁ ମେରୁକୁ ସପତ । ମେରୁର ଶିରେ ସ୍ୱର୍ଗପଥ ॥
ଏ ପୃଥ୍ୱୀ ମଧ୍ୟେ ମେରୁଶୃଙ୍ଗ । ଏ ଅଧଊର୍ଦ୍ଧ୍ୱେ ବେନିଭାଗ ॥
ବିରାଟ ପୁରୁଷ ଘୋଟିଛି । ବିଦଶ ଶରୀର ହୋଇଛି ॥
ପାଦ ତା ପାତାଳ ଯେ ପୁର । ଶୁଣ ହେ ମନୁ ନୃପବର ॥
କଟୀ ଭାଗକୁ ମର୍ତ୍ତ୍ୟପୁର । ବୋଲନ୍ତି ବିରାଟ ଉଦର ॥
ମେରୁର ଶିଖ ସ୍ୱର୍ଗପୁର । ସେହିଟି ବିରାଟର ଶିର ॥
ପାଦରୁ କଟିଆଉ ଶିର । ବିରାଟରୂପ ହେତୁ କର ॥
କହୁଛି ବିରାଟ କଟିର । ସେହି ଅଟେ ମହୀମଣ୍ଡଳ ॥
ସପ୍ତସମୁଦ୍ର ସପ୍ତକୁଳି । ସଚରାଚର ଏ ଦେହିଟି ।୭୦।
ଗିରିଶିଖ ଯେ ଭୁଜମନ । ଦଶାଦିଗ ଅଟେ ଶ୍ରବଣ ॥

ନାସିକା ଶ୍ରବଣଟି ଜାଣ । ସୁସ୍ତକାର କରଇ ସ୍ୱନ ॥
ସୂର୍ଯ୍ୟ ତା ଚକ୍ଷୁ ହୋଇଥାଇ । ଚନ୍ଦ୍ରମୁଖ ଗୋଷ୍ଟ ଅଟଇ ॥
ଅଗ୍ନି ଜ୍ୟୋତି ଅଟଇ ତାର । ନକ୍ଷତ୍ରମାନେ ପୁଷ୍ପ ମାଳ ॥
ଗ୍ରହଗଣେ ଯେ ଫୁଲପତ୍ର । ଦେବ ଯେ ଷଡ଼ାଙ୍ଗ ଅଟନ୍ତି ॥
ପିଣ୍ଡ ବ୍ରହ୍ମାଣ୍ଡ ମଧ୍ୟେ ସେହ୍ନ । କହିଲି ଶୁଣ ନରସାଇଁ ॥
ବିରାଟ ଏହାକୁ ବୋଲନ୍ତି । ବୁଦ୍ଧଜନେ କହି ଅଛନ୍ତି ॥
ପୃଥ୍ୱୀ ପବନ ଯେ ଆକାଶ । ଚନ୍ଦ୍ର ସୂର୍ଯ୍ୟ ଜଳ ଅଗ୍ନି ଶ ॥
ଏ ସାତ ସପ୍ତ ଆବରଣ । ବ୍ରହ୍ମାଣ୍ଡ ହୋଇଛି ଭିଆଣ ॥
ଏ ତିନିଲୋକରେ ବିହର । ପିଣ୍ଡ ବ୍ରହ୍ମାଣ୍ଡ ହେତୁ କର ॥
ଏ ସାତ ବାହାରେ କହିତ । ନାହି ଆଉ କିଛି ପଦାର୍ଥ ॥
ବେଦ ଶାସ୍ତ୍ର ଯେତେ କହି । ବିରାଟ ପୁରୁଷର ତହିଁ ॥
ସପ୍ତ ଆବରଣ ଅଛଇ । କହୁଛି ଶୁଣ ନରସାଇଁ ॥
ଏଥି ଉପରେ ବାର ତହିଁ । ଅଛି ଶାସ୍ତ୍ର ନ ପାରେ କହି ॥
ଅଧ୍ୱଆତ୍ମା ଯେହୁ ପରମ । ଅମେରୁ ବ୍ରହ୍ମାଣ୍ଡ ଭିଆଣ ॥
ପରମ ନିରକ୍ତ ଅଟଇ । ସ୍ୱରୂପ କହିଦେଲି ମୁହିଁ ॥
ଏମନ୍ତ ଯେ ବ୍ରହ୍ମ ସ୍ୱରୂପି । ତହିଁ ଅଧ୍ୱଆତ୍ମା ଷରୁଛି ॥
ସେ ସୂକ୍ଷ୍ମ ଉଛଳରେ ତହିଁ । ବିରାଟରୂପ ବନ୍ଧା ହୋଇ ॥
ଭୁହି ଆପଟତଜ ବାଇବ । ଶୂନ୍ୟମନ ବୁଦ୍ଧି ଅସ୍ରବ ॥
ଏ ଅଷ୍ଟପାଦେ ବିହରଇ । ଆତ୍ମା ଯେ ଏଥିପରେ ଥାଇ ॥
ସେ ଆତ୍ମାବ୍ରହ୍ମ ସର୍ବାପର । ସେ ଆତ୍ମା ଉଦୟ ଓଁକାର ॥
ସଂସାର ପ୍ରଳୟ ହୁଅଇ । ଆତ୍ମା ଯେ ପ୍ରଳୟ ନୁହଇଁ ॥
ବ୍ରହ୍ମାଣ୍ଡ ପ୍ରଳୟ ହୋଇଲେ । ବିରାଟରୂପ ନାଶଭଲେ ॥
ଯେତେ ଯା ପରମାୟୁ ହୋଇ । ତେତେ କେ ଖେନ୍ତୁ କ୍ଷୟୁଯାଇଁ ॥
ସର୍ବେଷେ ପରିପୂର୍ଣ୍ଣ ଯାନ୍ତି । ଆତ୍ମାବ୍ରହ୍ମ ଅନଳ ମୂର୍ତ୍ତି ॥
ସେ ଆତ୍ମାବ୍ରହ୍ମ ଭଜନାହିଁ । ଶାସ୍ତ୍ରେ ସଂଖ୍ୟା କେହୁ ପାଇ ॥
ନିଗମ ଆଗମରେ କେହି । ଜପା ଅଜପା ମନ୍ତ୍ରେହିଁ ॥

କ ଅବା ବୁଦ୍ଧି ଅନୁସାରେ । ପଣ୍ଡିତମାନେ ଏ ସଂସାରେ ।।
କେ ଅନୁମାନ ଅଶକ୍ତିରେ । ଭେଦ ତାହାର ନ ପାଇଲେ ।।
ହରନାମ ଅସଂଖ୍ୟ ହୋଇ । ଅଶେଷରେ ଯେ ଶେଷ ନାହିଁ ।।
ଢବାନଳି ବଧି ଯେତେହେଁ । ଅନ୍ତ ନ ମିଳଇ କେବେହେଁ ।
ନାମ ବ୍ରହ୍ମବାଚ୍ୟ ଅନ୍ତର । ଚରାଚର ସେ ସଞ୍ଚାର ।୧୦୨।
ପରିପୂର୍ଣ୍ଣରେ ବ୍ୟାପିରହି । ଜାଣନ୍ତି ସୁଜ୍ଞାନୀ ଯେ ତହିଁ ।।
ବସ୍ତୁ ନାମର ବସ୍ତୁର । ଭେଦ ପାଇନାହିଁ ତାହାର ।।
ଆପଣଙ୍କୁ ଅପେ ଚିହ୍ନିଲଇଁ । ଗୋଚର କରଣ ପାରଇ ।।
ଶୁଦ୍ଧ ସ୍ୱଭାବରେ ଯେ ମନ । ଗୁରୁ ସେବାରେ ହେ ପୂର୍ଣ୍ଣ ।।
ଗୁରୁ ଆଜ୍ଞାରେ ଆତ୍ମାପୂର୍ଣ୍ଣ । ମିଳଇ ପରମର ପଥ ।।
ପରମ ମୁକ୍ତି ପ୍ରାପ୍ତି ହୋଇ । ଗୋଚର କରଣ ପାରଇ ।।
ଯେଉଁ ସୂତ୍ରେ ସଚରାଚର । ପିଣ୍ଡ ବ୍ରହ୍ମାଣ୍ଡ ହୋଇ ସ୍ଥିର ।।
ଚରଃ ଅଦ୍ୟ ଶ୍ରୁତି ଶ୍ରୁତି । ଗୁରୁ ପୂଜାକୁ ନ ଜାଣନ୍ତି ।।
ଜ୍ଞାତବ୍ୟ ଏ ଶ୍ରୁତି ସ୍ମୃତି । କରଣ କହି ନ ପାରନ୍ତି ।।
ତେଣୁ ଏ ଆତ୍ମା ସୂର୍ଯ୍ୟଗୋଷ୍ଠି । କାହାକୁ ଗୋଚର ନୁହେଁଟି ।।
ଗୁରୁ ନ କହିଲେ କେମନ୍ତେ । ଜାଣିବେ ବ୍ରହ୍ମାସ୍ୱର ଯେତେ ।।
ଶ୍ରୀଗୁରୁଙ୍କର ଉପଦେଶ । ସୁସାଧୁ ଜନଙ୍କର ଭାଷ ।।
ବେଦ ବେଦାନ୍ତହିଁ ବୁଝିଣ । ପିଣ୍ଡ ବ୍ରହ୍ମାଣ୍ଡେ ଅନୁମାନ ।।
ଅନୁଭବ ଯେ ଜନ କରେ । ଦେହକୁ ଏ ତିନ ପ୍ରକାରେ ।।
ଭକ୍ତିବଳେ ଦୃଶ୍ୟ ହୁଅନ୍ତି । ଜ୍ଞାନ କର୍ମ ବିବିଧ ମୁକ୍ତି ।।
ଜାଣଇ ଆତ୍ମାର ଭାବକୁ । ଚୈତନ୍ୟ କହନ୍ତି ମନକୁ ।।
ମୂର ବେଦପଢ଼ିଣ ଧର୍ମ । ଜ୍ଞାନ ସାଧି ନିଷ୍ଫଳ କର୍ମ ।।
ଆତ୍ମା ଜ୍ଞାନ ବିହୀନ ପ୍ରାଣୀ । ଅଧମ ବୋଲି ତାକୁ ଜାଣି ।।
ସର୍ବ ଶାସ୍ତ୍ର ପଢ଼ି ନର । ଯେତେହେଁ କଲେ ସେ ବିଗ୍ରହ ।।
ଆତ୍ମା ବ୍ରହ୍ମକୁ ଚିହ୍ନି ନାହିଁ । ଶୁଦ୍ଧ ଯେ ନୋହେ ତାର ଦେହି
ବ୍ରହ୍ମାଦି ଗନ୍ଧର୍ବ କିନ୍ନର । ପିଶାଚ ରାକ୍ଷସ ଯେ ନର ।।

ଯେତେକ ପିଣ୍ଡ ବ୍ରହ୍ମାଣ୍ଡର । ଏ ସମସ୍ତ ଯେ ସମତୁଲ ॥
ପିଣ୍ଡ ବ୍ରହ୍ମାଣ୍ଡ ଯେ ବେଗଳ । ନୁହଇ ମନେ ହେତୁ କର ॥
ଜଙ୍ଗମ କୀଟ ପତଙ୍ଗାଦ । ସ୍ଥାବରୁ ଯେତେ ଦେହ ଭେଦ ॥
ଏ ସର୍ବ ଶରୀର ପ୍ରଣବ । ପ୍ରଣବ ଜାଣି ଯୋଗୀ ହେବ ॥
ପ୍ରଣବ ଜାଣିଲେ ପିଣ୍ଡକୁ । ଜାଣଇ ବ୍ରହ୍ମ ଜାଣିବାକୁ ॥
ପିଣ୍ଡ ବ୍ରହ୍ମାଣ୍ଡ ବସ୍ତୁରଇ । ଜାଣିଲେ ସମସ୍ତ ଜାଣଇ ॥
ତାହାକୁ ଯୋଗୀ ବୋଲି କହ । ବ୍ରହ୍ମକୁ ଯେ ଚହ୍ନି ପାରଇ ॥
ପିଣ୍ଡର ବସ୍ତୁ ଶୁଣିଲ । ବ୍ରହ୍ମାଣ୍ଡ ଜାଣିପାରେ ଭଲେ ॥
ଆତ୍ମ ଜ୍ଞାନ ଜାଣିଲେ ପ୍ରାଣି । ଶାସ୍ତ୍ରରେ ହେବେ ମୋହେ ଭ୍ରମି ॥

ଶ୍ଳୋକଃ ।

ମନସ୍ଥଂ ପୃଚ୍ଛ ପୃଚ୍ଛାମି ଚୈତନ୍ୟ ଚରଣାଗତ ।
କଥଇସ୍ୱ ମୋହାଭ୍ରଗ ପିଣ୍ଡ ଯନ୍ତ ବସ୍ତୁରଣାତ୍ ॥

ମନ ପଣ୍ଟରେ ଚଇତନ । ଗୁରୁ ଚରଣେ ହୋଇ ମାନ୍ୟ ॥
କହିଲ ବସିଟ ନିର୍ଣ୍ଣୟ । ହେ ଗୁରୁ ପିଣ୍ଡ ସ୍ଥିତ କହ ॥
ମନ କାର୍ପୁଣ୍ୟେ ଚଇତନ୍ୟ । କହନ୍ତି ପ୍ରମୋଦ ହୋଇଣ ॥
ପିଣ୍ଡ ବ୍ରହ୍ମାଣ୍ଡର ନିର୍ଣ୍ଣୟୀ । କହିବ ଶୁଣ ମନ ଦେଇ ॥
ଯେଉଁ ପିଣ୍ଡ ତଥ୍ୟ ଜାଣିଲେ । ସଚରାଚର ଜାଣେ ଭଲେ ॥
ଜଗତ ଜାଣି ଦାସ୍ୟ ନେହି । ଜ୍ଞାନ ନେନ୍ଦ ଯେ ପ୍ରକାଶଇ ॥
ସ୍ଥୂଳଖାନ ପିଣ୍ଡଯାଷୁଁ । ଏ ସର୍ବେ ନିତ୍ୟ ବଧ୍ୟ ହୋଇ ॥
ବିତନ୍ତି ବ୍ରହ୍ମାଣ୍ଡ ଭ୍ରମଣ । କରନ୍ତି ସାବଧି ରମଣ ॥
କଟୀଠାରୁ ପାଦ ଯାଏଣ୍ଟି । ପାତାଳପୁର ଯେ ପ୍ରକଟି ॥
କଟିଠାରୁ ଯେ କଣ୍ଠଯାଏ । ମର୍ତ୍ତ୍ୟପୁର ହୁଏ ବୋଲାଏ ॥
କଣ୍ଠିଠାରୁ ଲଲାଟ ପୁରୀ । ଏହାକୁ ଦେବ ସ୍ୱର୍ଗ ବୋଲି ॥
ଏମନ୍ତେ ବିମାଧା ବିଖଣ୍ଡ । ଚହ୍ଲାଇ ଦେଲି ଏ ବ୍ରହ୍ମାଣ୍ଡ ॥
ପିଣ୍ଡଟି ପ୍ରଣବ ଅକାର । ନିର୍ବାଣ ଏ ବିନ୍ଦୁ ମାକାର ॥

ବିମାତା ପରେ ବିନ୍ଦୁ ରହି । ଶୁଣ ହେ ମନୁ ନରସାଇଁ ॥
ସେ ବିନ୍ଦୁରେ ଧ୍ୱନି ସଂଯୁକ୍ତ । ହେବାରୁ ଏ ଓଁକାର ଜାତ ॥
ପିଣ୍ଡରୁ ଓଁକାର ଯାଇଁଣ । ଓଁକାରୁ ପିଣ୍ଡ ଯେ ନିର୍ମାଣ ॥
ଓଁକାରୁ ହୋଇଲା ଯେ ଶବ୍ଦ । ଓଁକାରୁ ହୋଇଲା ଯେ ବେଦ
ବେଦ ସମସ୍ତ କହୁଛନ୍ତି । ବେଦ ଶବ୍ଦରୂପ ଭେଦନ୍ତି ॥
ଶବ୍ଦୁ ଓଁକାର ଧ୍ୱନି ଜାତ । ହେଲା ଧ୍ୱନି ଯେ ଠାବେ ଖ୍ୟାତ
ସେ ସ୍ଥାନ ନ ପାଇଲେ ଅନ୍ତ । ତେଣୁ ସେ ହୋଇଲା ଅଜ୍ଞାତ ॥
ଓଁକାର ଯେ ସ୍ଥାନୁ ହୋଇଛି । ଶୁଣ ତା କହିବି ମୁଁ ବଛି ॥
ନିର୍ମଳ ସୂକ୍ଷ୍ମମୟ ଜ୍ୟୋତି । ବ୍ରହ୍ମ ଅରୂପ ହୋଇଛନ୍ତି ॥
ରୂପ ନାହିଁ ସର୍ବ ବ୍ୟାପକ । ହୋଇଛି ଦେଖ ମନୁ ନୃପ ॥
ତାହାକୁ ସତ୍ୟ ବ୍ରହ୍ମ କହି । ଜୀବେ ଅଜୀବେ ପୂରି ଥାଇ ॥
ଏ ଅଷ୍ଟାଗୁଣ ବ୍ରହ୍ମମୟୀ । ସୂକ୍ଷ୍ମରେ ସର୍ବ ଧରି ଥାଇ ॥
ଅନାମ ଅରୂପ ବୋଲନ୍ତି । ନାମ ରୂପ ଭିନ୍ନ ନାହାନ୍ତି ॥
ଅନାମ ଅରୂପ ଯେ ଅନ୍ତ । ନ ମିଳିବାରୁ ସେ ଅନନ୍ତ ॥
ସେ ଅନନ୍ତ ଭାବ କେମନ୍ତ । କହିବ ବେଦ ଆଦ୍ୟ ପ୍ରାନ୍ତ ॥
ଶବ୍ଦ ସମସ୍ତ ଧରି ମୂର୍ତ୍ତି । ପୂରିଛି ସର୍ବ ଘଟେ ଜାଣ ॥
ଶବ୍ଦ ବ୍ରହ୍ମ ସେ ଏଣୁ କରି । ସେହି ଶବ୍ଦ ନାମଟି ହରି ॥
ସେ ଶବ୍ଦ ପିଣ୍ଡରେ ସଂଯୁକ୍ତ । ହେବାରୁ ଓଁକାରୁ ଯେ ଜାତ ॥
ପିଣ୍ଡ ବ୍ରହ୍ମାଣ୍ଡେ ସବୁ ପୂରି । ଶବ୍ଦରୁ ଏ ପିଣ୍ଡ ସଞ୍ଚରି ॥
ସମସ୍ତ ବ୍ରହ୍ମାଣ୍ଡ ବିବିଧ । ତିନି ପ୍ରକାରେ ଅଛନ୍ତି ଭେଦ ॥
ଦ୍ୱୀପୁଞ୍ଜ ମଧ୍ୟେ ମେରୁସ୍ଥିତ । ଧାରଣା ହୋଇଅଛି ପୃଥ୍ୱୀ ॥
ଏ ରୂପରେ ପିଣ୍ଡ ବ୍ରହ୍ମାଣ୍ଡ । ଅଛନ୍ତି ଗୃରଖାନ ଜୀବ ॥
ଏକ ଯନ୍ତ୍ରରେ ଜନ୍ମ ହୋଇ । ଏଣୁ ଏ ଭିନ୍ନାଭିନ୍ନ ନୋହି ॥
ପୃଥ୍ୱୀଭାଗ ମାଂସ ହୋଇ । ରୁଧିର ଜଳ ଯେ ଅଟଇ ॥
ପବନ ରୂପଟି ପରାଣ । ସର୍ବ ଜୀବଙ୍କ ମୂଳ ସ୍ଥାନ ॥
ଆକାଶେ ଶବ୍ଦ ବିନ୍ଦୁ ବ୍ୟାପ୍ତ । ଶବ୍ଦ ବିନ୍ଦୁ ଯେ ପଞ୍ଚଭୂତ ॥

ଏ ସର୍ବ ପିଣ୍ଡରେ ଅଛିତ । ସପ୍ତ ଭୁବନେ ଜଗତ ॥
ପୃଥ୍ୱୀ ଜଳ ଅଗ୍ନି ପବନ । ଅକାଶ ଅହଂକାର ମନ ॥
ପିଣ୍ଡ ବ୍ରହ୍ମାଣ୍ଡେ ଏହୁ ସାତ । ଏହିଟି ବେଦର ଯେ ତତ୍ତ୍ୱ ॥
ଅଷ୍ଟ ଯେ ଓଁକାର ଅଟଇ । ନବମେ ଜ୍ୟୋତି ହେଲା ତହିଁ ॥
ଦଶମେ ପରମ ଯେ ସୂକ୍ଷ୍ମ । କହୁଛି ଶୁଣ ନୃପନାଥ ॥
ଏକାଦଶମେ କ୍ରୀଡ଼ା ଜାତ । ଯେରୂପେ ଏ ପିଣ୍ଡ ନିର୍ମିତ ॥
ଏମନ୍ତେ ଏକାଦଶ ଇନ୍ଦ୍ରି । ସମସ୍ତେ ଇନ୍ଦ୍ର ବସେ ଛନ୍ଦି ॥
ଇନ୍ଦ୍ରିୟ ବଶେ ପିଣ୍ଡ ହୋଇ । ଜାଣନ୍ତି ସାଧୁ ପୁରୁଷହିଁ ॥
ଚର୍ମ ଶୋଣିତ ମାଂସ ମେଦ । ଅସ୍ଥି ମଜ୍ଜା ଧାତୁଲୁ ଭେଦ ॥
ଏ ସପ୍ତ ଧାତୁ ସପ୍ତ ଦ୍ୱୀପ । ଦଣ୍ଡ ଅଘୋର ଦଏ ତାପ ॥
କ୍ଷୀର କ୍ଷାର ଲୁଣ ମଧୁର । ସୁରା ଘୃତ ଅଦ୍ଧ ରୁଧିର ॥
ସାତ ସମୁଦ୍ର ସାତଦ୍ୱୀପ । ବେଢ଼ି ପିଣ୍ଡ ବ୍ରହ୍ମାଣ୍ଡ ରୂପ ॥
ପିଣ୍ଡକୁ ଅଘୋର ଅଛନ୍ତି । କହିବା ତହିଁର ଅକୃତି ॥
ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱବୋଧ । କହିବା ଶୁଣ ମନୁ ଇନ୍ଦ୍ର ॥
ସାତ ସମୁଦ୍ର ସାତ ଦ୍ୱୀପ । ମଧ୍ୟରେ ମେରୁ ଗିରି ସ୍ଥିତ ॥
ସେ ମେରୁ ଦଣ୍ଡର ଭିତରେ । ସବୁ ଗସ୍ତା ଅଛି ତହିଁରେ ॥
ଲୁଚା ତଳ୍ପ ଚୋଳାଏ ସେହି । ବୁଧ ଜନେ ଅଛନ୍ତି କହି ॥
ସେ ଇନ୍ଦ୍ର ଭିତରେ ପରମ । ସୂକ୍ଷ୍ମରେ କହଇ ବିଶ୍ରାମ ॥
ଅତ୍ମା ବ୍ରହ୍ମରୂପେ ବେଢ଼ାଇ । କରୁଛି ଦେଖ ସେହି ଘର ॥
ତା ଘର ଅତ୍ୟନ୍ତ ସୁନ୍ଦର । ଶୋଭା ଧଟେଶ ଚଉଦପୁର ॥
ସେ ପୁର ମଧ୍ୟରେ ଯେ ରହି । ଜାଜ୍ୱଲ୍ୟ ଜ୍ୟୋତି ସିଂହାସନ ॥
ଇନ୍ଦ୍ରଧନୁ ପ୍ରାୟେ ବସିଛେ । କୋଟି ଅଦିତ୍ୟ ତେଜ ଗଞ୍ଜେ ॥
ମୋତି ମାଣିକ୍ୟ ହୀରା ନୀଳା । ବୈଦୁର୍ଯ୍ୟ ଝୁମ୍ପା କେସ କେସ ॥
ପାଦଛି ବ୍ରହ୍ମ ଗାୟତ୍ରୀ ବିଶ୍ୱ । ଋଗବେଦ ହୋଇ ଦୁଅଶ ॥
ଚନ୍ଦ୍ର ସୂର୍ଯ୍ୟ ଦେଖ ଯେ ତହିଁ । ପାହାର ନିଶିଦିନ ସେହି ॥
ଇନ୍ଦ୍ରାଦି ସର୍ବ ଦେବଗଣେ । ବେଠିଆ ହୋଇଣ ଏମାନେ ॥

ଅଙ୍ଗକୁ ମାନ ସିଂହାସନ । ତଳେ କରପଦ୍ମ ଯୋଡ଼ଣ ॥
ସିଂହାସନରେ ବସିଲେ କହ୍ନ । ତ୍ରୈଲୋକ୍ୟ ଚନ୍ଦ୍ରମଣି ଧନ ॥
ଶ୍ୟାମଳ ଅତି ମନୋହର । ଜିଣି ଇନ୍ଦ୍ରନୀଳମଣିର ॥
ଛପନ ଛନ୍ଦରେ ବଇଠି । ଛନ୍ଦଛି ଏ ପାଦଦ୍ୱୟଟି ॥
ତ୍ରିଭଙ୍ଗି ଛନ୍ଦେ ଉଭା ହୋଇ । ମୋହୁଛି ନବସୃଷ୍ଟି ସେହି ॥
କେକୀ ଚନ୍ଦ୍ରିକା ଶିରପର । ଗୁଞ୍ଜ ଗୁଚ୍ଛର ଫୁଲମାଳ ॥
ଶ୍ରୀଗୋପୀ ତିଳକ ଚନ୍ଦନ । କପୋଳେ କସ୍ତୁରୀ ଲେଖନ ॥
ଶ୍ରବଣେ ମକର କୁଣ୍ଡଳ । ମଣ୍ଡିତ ହୋଇ ଗଣ୍ଡସ୍ଥଳ ॥
ଖଞ୍ଜନ ଗଞ୍ଜନ ଅରୁଣ । ଚକର କମଳ ନୟନ ॥
ନାସାରେ ଗଜମୁକ୍ତା ଲସେ । ରବ ଉପରେ ତାରା କି ସେ ॥
ରଙ୍ଗଅଧରେ ମନ୍ଦହାସେ । ପ୍ରବାଳ ମୁକ୍ତା ପରହସେ ॥
କଣ୍ଠରେ କୌସ୍ତୁଭ ଶୋଭନ । ହୃଦରେ ଶ୍ରୀବତ୍ସର ଚିହ୍ନ ॥
ବନମାଳ ଉରେ ଲମ୍ବଇ । ପୀତାମ୍ବର କାଛେଣି ହୋଇ ॥
ଉତ୍ତମ ମଧ୍ୟା ସିଂହଠାଣି । ଶୋଭିତ ମେଖଳା କିଙ୍କିଣି ॥
ପାଦଅଙ୍ଗୁଳି ନଖକାନ୍ତି । ପୂର୍ଣ୍ଣିମୀଚନ୍ଦ୍ର ପ୍ରାୟ ଜ୍ୟୋତି ॥
ଅମ୍ବୁଜ ପାଦ ସର୍ବଠାଏ । ଏ ଅଷ୍ଟାଦଶ ଚିହ୍ନ ଶୋହେ ॥
ଏ ଅଷ୍ଟଅଳଙ୍କାର ମାନ । ହୋଇଛି ଅଙ୍ଗରେ ଶୋଭନ ॥
ଚୂଆ ଚନ୍ଦନ ଯେ କର୍ପୂର । ଇତ୍ୟାଦି ବୋଳ ସର୍ବାଙ୍ଗର ॥
ରଙ୍ଗିମାଧରେ ମନ୍ଦହାସ । ବନ୍ଧ ପଡ଼ୁଛି କି ପୀୟୁଷ ॥
ଚୈତନ୍ୟ କହନ୍ତି ଏ ଉକ୍ତି । ଭାବଥିଲେ ପଥ ସୁମତି ॥
ଭାବେ ଶୁକପରୀକ୍ଷିତଙ୍କ । ନାରଦ ଯେ ବସୁଦେବଙ୍କୁ ॥
ଈଶ୍ୱରେ ପାର୍ବତୀ ଅଗ୍ରତ । ଯଦୁରାଜାଙ୍କୁ ଅବଧୂତ ॥
ନିମି ଆଗରେ ନବମୁନି । ଜୀବ ପରମ ତତ୍ତ୍ୱବାଣୀ ॥

ଦୁଇଶ ଦ୍ୱାବିଂଶ ଯେ ପଦ । ଅଷ୍ଟମ ଅଧ୍ୟାୟ ପ୍ରବନ୍ଧ ॥
ଶ୍ରୀମନ୍ତ ଗୁରୁପାଦ ଧ୍ୟାୟି । ବିପ୍ର ମଦନ ଦାସ କହ୍ନ ।୨୨୨।

ଇତି ଶ୍ରୀ ନିଗମଗୀତା ଯୋଗଶାସ୍ତ୍ରେ ବ୍ରହ୍ମବିଦ୍ୟାୟାଂ ଚୈତନ୍ୟ ସମ୍ବାଦେ ଚବଶ ପୁରୁଷ ପିଣ୍ଡ ବ୍ରହ୍ମାଣ୍ଡ ନିର୍ଣ୍ଣୟକଥନେ ମଦନ-ଦାସ ବିରଚିତେ ନାମ ଅଷ୍ଟମୋଽଧ୍ୟାୟଃ ।

ପ୍ରଥମ ଖଣ୍ଡ ସମାପ୍ତ ।



PRINTED BY NITYANAND SAHOO A PRESS CUTTACK

# ବିଜ୍ଞାପନ !

ନିମ୍ନଲିଖିତ ପୁସ୍ତକଗୁଡ଼ିକ କଟକ ଅରୁଣୋଦୟ ପ୍ରେସରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି, ଗ୍ରାହକଗଣ ତଲ୍ବ କଲେ ଅନାୟାସେ ପ୍ରାପ୍ତ ହେବେ ।

| | |
|---|---|
| କୋକଶାସ୍ତ୍ର (ପଦ୍ୟ) | ଖ ୧ ଟ ୦ ୪/ |
| ରୁଦ୍ରଚଣ୍ଡୀ | ଖ ୧ ଟ ୦ ॥/ |
| ବନବିହାର | ଖ ୧ ଟ ୦ ୯୨ |
| ଲକ୍ଷ୍ମୀପୁଷ୍ପ ବା ଦୀନବନ୍ଧୁ ଜଣାଣ | ଖ ୧ ଟ ୦ /୨ |
| କୁସୁମାଞ୍ଜଳି ବା ଉପଦେଶ ତରଙ୍ଗ | ଖ ୧ ଟ ୦ / |
| ବୁଦ୍ଧୁ ଚମ୍ପାଦେଈ କାନ୍ଦ | ଖ ୧ ଟ ୦ । |
| ଜହ୍ନ ମାଏ ଚୌତିଶା | ଖ ୧ ଟ ୦ ୯॥ |
| ଲକ୍ଷ୍ମଣ ଶକ୍ତିଭେଦ | ଖ ୧ ଟ ୦ /୨ |
| ସାବିତ୍ରୀ ବ୍ରତ | ଖ ୧ ଟ ୦ / |
| ଧନାପୁକ ବ୍ରତ | ଖ ୧ ଟ ୦ /॥ |
| କୁଞ୍ଜୁଟୀ ବ୍ରତ | ଖ ୧ ଟ ୦ / |
| ନଅ ପାଣି କଳ | ଖ ୧ ଟ ୦ / |
| ଅଭିଜାତ ସଂହିତା | ଖ ୧ ଟ ୦ /୨ |
| ଅଣାକାର ସଂହିତା | ଖ ୧ ଟ ୦ /୨ |
| ବିବାହ ମଙ୍ଗଳାଷ୍ଟକ | ଖ ୧ ଟ ୦ ୯୯ |
| ବୁଟବୋଲି | ଖ ୧ ଟ ୦ ୯୨ |
| ସୁହଧର୍ମ | ଖ ୧ ଟ ୦ /୨ |
| ଷୋଳଚଉପଦୀ ଓ ଗୁରୁଚଉପଦୀ | ଖ ୧ ଟ ୦ ୵ |
| ଚଉଶପଟଳ ( ଅଚ୍ୟୁତାନନ୍ଦ ଦାସଙ୍କ କୃତ ) | ଖ ୧ ଟ ୦ ।/ |
| ଯଶୋଦାବୋଧ ଚଉତିଶା | ଖ ୧ ଟ ୦ / |
| ଭାଗବତବର୍ଣ୍ଣିକା | ଖ ୧ ଟ ୦ ୯୯ |

ପ୍ରାପ୍ତ ସ୍ଥାନ—ଅରୁଣୋଦୟ ପ୍ରେସ
ବାଲୁବଜାର କଟକ ।

ପ୍ରକାଶକ—
ଶ୍ରୀ ମାଧବଚନ୍ଦ୍ର ଦାସ୍